# କୁନ୍ତଳା କୁମାରୀଙ୍କ

# କବି-ପ୍ରତିଭା



ଲେଖିକା—ଶ୍ରୀମତୀ ସରଳା ଦେବୀ

# କୁନ୍ତଳା କୁମାରୀଙ୍କ

# ଗଦ୍ୟ-ପ୍ରତିଭା

ଲେଖିକା

ଶ୍ରୀମତୀ ସରଳା ଦେବୀ

---

୨ୟ ସଂସ୍କରଣ, ୧୯୪୫

ପ୍ରକାଶକ

ବାଣୀବିନୋଦ ଗ୍ରନ୍ଥାଳୟ

ରାଜାବଗିଚା—କଟକ—୧

ମୂଲ୍ୟ—ଟ ୧ ।        ( ଏକଟଙ୍କା ଗୃରଅଣା ମାତ୍ର )

# ଉତ୍ସର୍ଗପତ୍ର

ଯେଉଁ ଉତ୍କଳଭାରତୀ ଉତ୍କଳ-ଗୃହରେ ସ୍ୱୀୟ ଅମର ପ୍ରତିଭା ବଳରେ ଗଦ୍ୟ ପଦ୍ୟର କୁସୁମ-କୁଞ୍ଜ ରଚନା କରି ପ୍ରୟାଣ କରି-ଅଛନ୍ତି, ଯେଉଁ ମହୀୟସୀ ନାରୀ ନିଜର ଚିନ୍ତା ଓ ସାହିତ୍ୟର ପରିଧିକୁ ଦେଶ କାଳ, ପାତ୍ରର ସୀମା ଛେଦ କରି ପୃଥିବୀର ବିସ୍ତୃତ ପ୍ରାଙ୍ଗଣ ପର୍ଯ୍ୟନ୍ତ ଟାଣି ନେବାର ପରିକଳ୍ପନା କରୁଥିଲେ, ଯାହାଙ୍କର ବିରଳ ସ୍ଥାନ ନିକଟ ଭବିଷ୍ୟତରେ ଆଉ କେଉଁ ଉତ୍କଳୀୟ ମହିଳାଙ୍କଦ୍ୱାରା ମଣ୍ଡନ ହେବାର କଳ୍ପନା କରି ହୁଏ ନାହିଁ, ସେହି ବନ୍ଦନୀୟା ଉତ୍କଳର ବରପୁତ୍ରୀ ଶ୍ରୀମତୀ କୁନ୍ତଳାକୁମାରୀ ଦେବୀଙ୍କର ସ୍ମାରକରୂପେ ଏହି କ୍ଷୁଦ୍ର ପୁସ୍ତକଖଣ୍ଡି ଉତ୍ସର୍ଗୀକୃତ ହେଲା । ଇତି ।

ଗୁଣମୁଗ୍ଧା
**ଶ୍ରୀମତୀ ସରଳା ଦେବୀ**

---

ଏହି ପ୍ରବନ୍ଧଟି ଉତ୍କଳସାହିତ୍ୟ ସମାଜରେ କୁନ୍ତଳାକୁମାରୀଙ୍କର ଶ୍ରାଦ୍ଧସଭାରେ ୨୩।୮।୩୯ ତାରିଖ ଦିନ ପଠିତ ହୋଇ ଶ୍ରେଷ୍ଠ ବିବେଚିତ ହେବାରୁ ସମାଜଦ୍ୱାରା ଲେଖିକାଙ୍କୁ ଟ ୧୦୦୯ ପୁରସ୍କାର ଦେଇଥିଲେ ସମାଜର ସଭାପତି ରାୟ ବାହାଦୁର ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ।

# କୁନ୍ତଳାକୁମାରୀଙ୍କ
# କବି ପ୍ରତିଭା



କୁନ୍ତଳାକୁମାରୀ ଉତ୍କଳ ଖଣ୍ଡରେ ତାଙ୍କର ଅଦ୍ଭୁତ ପ୍ରତିଭା ସାହିତ୍ୟ ମଧ୍ୟଦେଇ ବିକାଶ କରି ପାରିଛନ୍ତି ବୋଲି ଆମର ଜାତୀୟ ଜୀବନରେ ତାହାଙ୍କର ସ୍ମୃତି ଅମଳିନ ହୋଇ ରହିବ । ଡାକ୍ତରୀ ଥିଲା ତାହାଙ୍କ ଜୀବନର ବାସ୍ତବ ଦିଗରେ ବ୍ୟବସାୟ; କିନ୍ତୁ ଅନ୍ତର ଥିଲା ପ୍ରକୃତିବନ୍ଦନାର ମୁଖର କବି । ଏହିପରି ବିପରୀତ ଦିଗରେ ନିଜର ଜୀବନକୁ ପରିଚାଳିତ କରି ଖୁବ୍ ଅଳ୍ପ କବି ଯେ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଛନ୍ତି, ଏହା କହିଲେ ବାହୁଲ୍ୟ ହେବ ନାହିଁ । ଅକାଳରେ ତାଙ୍କର ବିୟୋଗ ଘଟି ନ ଥିଲେ ସେ ଯେ ଉତ୍କଳଚଉକୁ ତାଙ୍କର ପରିଣତ ଜୀବନର ଭାବ ସମ୍ପଦ ଦେଇ ଆହୁରି ଐଶ୍ୱର୍ଯ୍ୟମୟ, ରସାଳ, ସୌନ୍ଦର୍ଯ୍ୟମୟ ଓ ଜାତୀୟ ଭାବଧାରାରେ ଅନୁପ୍ରାଣିତ କରିପାରିଥାଆନ୍ତେ, ଏହା ଯେ କୌଣସି

ସାହିତ୍ୟାମୋଦୀ ବ୍ୟକ୍ତି ସ୍ୱୀକାର କରିବେ । ଉତ୍କଳର ଭାଗ୍ୟ ସବୁ ଦିଗରେ ବିଡ଼ମ୍ବିତ । ଏହି ଦିଗରେ ମଧ୍ୟ ବିଡ଼ମ୍ବନା ଘଟିବାରେ ସ୍ୱାଭାବିକତା ରହିଅଛି ବୋଲି କହିବାକୁ ହେବ । କୁନ୍ତଳାକୁମାରୀଙ୍କର ସାହିତ୍ୟିକ ଜୀବନ ସହିତରେ ମୋର ସମ୍ବନ୍ଧ ନଥିଲା; କିନ୍ତୁ ତାହାଙ୍କୁ ମୁଁ ଭଲ କରି ଜାଣିଥିଲି । ତାଙ୍କର ଅନ୍ତରରେ ଯେଉଁ ସ୍ୱଦେଶ-ବତ୍ସଳତା ଦେଖିଥିଲି, ତାହାଙ୍କର ପ୍ରତ୍ୟେକ କଥାରେ ନିଜ ଦେଶର ବଡ଼ିମାକୁ ଦେଶର ଭୌଗୋଳିକ ସୀମା ବାହାରେ ପ୍ରକାଶ କରିବାର ଯେଉଁ ଆକୁଳତା ଦେଖିଛି, ତାହା ବାସ୍ତବିକ ଅନ୍ୟ ନାରୀକବିଙ୍କଠାରେ ଦେଖିବାକୁ ବିରଳ । ଏହି ଜାତୀୟ ପ୍ରୀତି ତାଙ୍କର ପରବର୍ତ୍ତୀ ପ୍ରବନ୍ଧ-ନିଚୟରେ ପ୍ରକାଶ ପାଇଅଛି । ସ୍ଫୁଲିଙ୍ଗ ତାଙ୍କର ଯେଉଁ ପ୍ରେରଣାବହ୍ନି ଉତ୍କଳର ତରୁଣ ତରୁଣୀଙ୍କୁ ସତ୍ୟାଗ୍ରହ-ସମରକାଳରେ ସଂହିବିକ୍ରମ ଆଣି ଦେଇଥିଲା, ତାହା ଜାତିର ମନରୁ ଲିଭିବ ନାହିଁ । ଏହି ସ୍ଫୁଲିଙ୍ଗରେ ତାଙ୍କ ମନରେ ଯୁବଭାବର ଏବଂ ଯୁବଜନୋଚିତ ଆକାଙ୍‌କ୍ଷାର ଚରମ ଅଭିବ୍ୟକ୍ତି ଘଟିଥିଲା ବୋଲି ପ୍ରତିକ୍ରିୟାଶୀଳ ଇଂରେଜ ସରକାରଙ୍କ ଶ୍ୟେନଦୃଷ୍ଟିରେ ପଡ଼ି ପୁସ୍ତକଟି ବହୁକାଳ ଲାଗି ବାଜ୍ୟାପ୍ତ ହେବାର ସମ୍ମାନ ଲାଭ କରିଥିଲା । ଭାରତର ଜାତୀୟ ଯୁଦ୍ଧ ବେଳେ ସେ ସୈନିକ ହୋଇ ନଥିଲେ ସତ୍ୟ, କିନ୍ତୁ ସେ ଯେ ସ୍ୱାଧୀନତା ଯୁଦ୍ଧ ସମୟରେ ଦେଶରେ ଜାତୀୟ ଗୃହିଣୀ ରୂପରେ ସୈନିକମାନଙ୍କୁ ଉତ୍ସାହିତ କରିଥିଲେ, ଏହା କାହାରିକୁ ଅବିଦିତ ନାହିଁ । ସେ ସୁଦୂର ଦିଲ୍ଲୀ ସହରରେ ଉତ୍କଳନାରୀର ଓ ଦେଶର ପ୍ରତିଷ୍ଠା ବଢ଼େଇଥିଲେ । ନାରୀକବି ସେଠାର ପ୍ରାୟ ପ୍ରତ୍ୟେକ ଜନହିତକର କର୍ମାନୁଷ୍ଠାନ ଓ ସାହିତ୍ୟିକ ଅନୁଷ୍ଠାନ, ଆଲୋଚନାଦିରେ ନିଜକୁ ଅହରହ ନିୟୋଜିତ କରିଥିଲେ । ଭାରତର ଆର୍ଯ୍ୟମହାସଭାର ଗୋଟିଏ ଅଧିବେଶନ

ଏହାଙ୍କର ଅଧିନାୟିକାତ୍ୱରେ ସମ୍ପାଦିତ ହୋଇଥିଲା । କିନ୍ତୁ କବି ସେଠାରେ ଗୋଟିଏ ହିନ୍ଦୀ ମାସିକ ପତ୍ରର ସମ୍ପାଦନା ମଧ୍ୟ କରୁଥିଲେ । ହିନ୍ଦୀସାହିତ୍ୟରେ କବିବର କିଷ୍ଣୁପର ସେବାର ଅଭିବ୍ୟକ୍ତି ବୋଧ ହୁଏ ତ ଫୁଟିବାର ଅବକାଶ ବିଧାତା ତାହାଙ୍କୁ ଦେଲେ ନାହିଁ । କିନ୍ତୁ ତଥାପି ସେ ଯେତେଦିନ ହିନ୍ଦୀସାହିତ୍ୟ ପରିଷଦରେ ସାହିତ୍ୟ ଚର୍ଚ୍ଚା କରୁଥିଲେ, ତାହାଦ୍ୱାରା ସେ କେବଳ ବ୍ୟକ୍ତିଗତରେ ନିଜକୁ ବଞ୍ଚାଇ ରଖିବାର ପ୍ରୟାସ କରି ନ ଥିଲେ, କରିଥିଲେ ଜାତି ଭାବରେ । ଉତ୍କଳର ଶ୍ରେଷ୍ଠ ସାହିତ୍ୟିକ ଅବଦାନମାନଙ୍କ ସହିତରେ ବିଶାଳ ଭାରତର ପରିଚୟ ସ୍ଥାପନର ପ୍ରଶଂସ୍ୟ ଚେଷ୍ଟାରେ ଇଂରେଜିରେ ମଧ୍ୟ ସେ କବିତା ଲେଖିପାରୁଥିଲେ । ଅବଶ୍ୟ ତାହା ସମସ୍ତଙ୍କୁ ବିଦିତ ନୁହେଁ । ଉତ୍କଳର ସାହିତ୍ୟ ସାହିତ୍ୟିକ, ଇତିହାସ ଐତିହାସିକ, ରାଜନୀତି ରାଜନୀତିକ, ପାଣ୍ଡିତ୍ୟ, ପଣ୍ଡିତ କଳା, କଳାକାରଙ୍କର ସମ୍ମାନ ଉତ୍କଳର ସୀମା ଭିତରେ ଆବଦ୍ଧ ରହିଯାଉଥିବା ହେତୁ ତାଙ୍କ ମନରେ ବରାବର କ୍ଷୋଭ ଜାତ ହେଉଥିଲା । ବ୍ୟକ୍ତିଗତ ଭାବରେ ସେହି କାରଣରୁ ତାଙ୍କର ଏହି କ୍ଷୋଭ ହିନ୍ଦୀ ଭାଷାର ସାହିତ୍ୟ, ସମ୍ବାଦପତ୍ରାଦିରେ ମଧ୍ୟ ପ୍ରକାଶ କରି ନିଜର ମାନସିକ ସାନ୍ତ୍ୱନା ପାଉଥିବାର ପ୍ରବୋଧନା ସେ ନିଜ ମନକୁ ଦେଉଥିଲେ ।

ରାଜନୀତି ଦିଗରେ ମଧ୍ୟ ସେ ପ୍ରତ୍ୟକ୍ଷ ସହଯୋଗ ରଖି ନ ଥିଲେହେଁ ତାଙ୍କର ମାନସିକ ସହଯୋଗ ଏବଂ ଅକୁଣ୍ଠ ଆର୍ଥିକ ବଦାନ୍ୟତାରେ ସେ କଦାପି କୃପଣତା ପ୍ରକାଶ କରି ନାହାନ୍ତି । କଲିକତା ପ୍ରବାସୀ ଉତ୍କଳ ସମ୍ମିଳନୀର ସଭାପତି ରୂପେ, ବାଲେଶ୍ୱର ନାରୀ ସମ୍ମିଳନୀର ସଭାପତି ରୂପେ ତାଙ୍କର ଅଭିଭାଷଣ ଯେଉଁମାନେ ସେ ସମୟରେ ପଢିଛନ୍ତି, ସେମାନେ ନିଶ୍ଚୟ ଏହା ସ୍ମରଣ ରଖିଥିବେ ।

କି ତେଜସ୍କର ଥିଲା ତାଙ୍କର ଭାବ, କି ବଳଶାଳୀ ଥିଲା ତାଙ୍କର ଭବିଷ୍ୟତ କଳ୍ପନା, କି ସରସ ଥିଲା ତାଙ୍କର ସ୍ରୋତସ୍ୱିନୀ ପରିଲିପିକାର ଗତିଧାରା ! ଏଯୁଗର ବାଣୀ ତାଙ୍କର ଯୁବଜନ ଚିତ୍ତରେ ବାଜିଥିଲା । ଏଯୁଗର ବହ୍ନିବିମୟ ଉଦାତ୍ତ ଡାକ ସେ କାନପାରି ଶୁଣୁଥିଲେ ଏବଂ ଦେଶବାସୀଙ୍କୁ ତାଙ୍କର ଅନବଦ୍ୟ କବିତ୍ୱ ଭାବଧାରାରେ ସିକ୍ତ କରି ପରିବେଷଣ କରିଯାଇ ଥିଲେ । କୁନ୍ତଳାକୁମାରୀ ତାଙ୍କ ଜୀବନର ସାଧ ଏହି ଦିଗରେ ପୂରଣ କରି ପାରିଲେ ନାହିଁ ବୋଲି ଜାତି ଚିରଦିନ ଶୋଚନା କରିବ । ଉତ୍କଳର ତରୁଣ ଚିତ୍ତ ଓ ଉତ୍କଳର ତରୁଣୀ ହୃଦୟ ଉତ୍ତର କାଳ ପାଇଁ ବ୍ୟଥିତ ହୋଇଉଠିବ. ଏଥିରେ ସନ୍ଦେହ ନାହିଁ । ସେ ଖାଣ୍ଟି ଓଡ଼ିଆଣୀ ଥିଲେ ମନରେ ଓ ପ୍ରାଣରେ । ଉତ୍କଳରେ ସାଧାରଣତଃ ସମସ୍ତଙ୍କର ଯେପରି ( Inferior complex ) ନିକୃଷ୍ଟ ମନୋଭାବ ଥାଏ, ତାହା ତାଙ୍କଠାରେ ଆଦୌ ନ ଥିଲା ବୋଲି ତାଙ୍କ ପାଖରେ ସାହଚର୍ଯ୍ୟ କରିବାର ସୁବିଧା ଯେଉଁମାନଙ୍କର ଘଟିଛି, ସେମାନେ ବରାବର ଗୋଟାଏ ଉଚ୍ଚ ଦରର ପ୍ରେରଣା ତାଙ୍କଠାରୁ ପାଉଥିଲେ । ନିଜ ଦେଶର କୌଣସି ବିଷୟକୁ ସେ ତାଚ୍ଛଲ୍ୟ ଭାବରେ ଦେଖୁ ନ ଥିବାରୁ ତାଙ୍କ ମନ ପ୍ରାଦେଶିକତା ଦୋଷଦୁଷ୍ଟ ବୋଲି ମନେ ହେଉଥିଲା । କିନ୍ତୁ ତାଙ୍କର କ୍ଷେତ୍ରରେ ସ୍ୱଦେଶରେ ଯେ କୌଣସି ସ୍ୱାତନ୍ତ୍ର୍ୟପ୍ରିୟା ସ୍ୱାତନ୍ତ୍ର୍ୟ ବୁଦ୍ଧିମତୀ ନାରୀଙ୍କର ଯେ ଏପରି ଭାବ ରହିବା ସ୍ୱାଭାବିକ ଥିଲ, ଏଥିରେ ସନ୍ଦେହ ନାହିଁ ।

ନାରୀ କବିଙ୍କର ସମସ୍ତ ସାହିତ୍ୟିକ ଅବଦାନ ସହିତ ମୋର ପରିଚୟ ଘଟି ନାହିଁ । ସାଧାରଣ ଭାବରେ ଯେଉଁ କେତେଖଣ୍ଡି ପୁସ୍ତକ ମୋ ଅବଧାନକୁ ଆସିଥିଲା, ସେ ସମ୍ବନ୍ଧରେ ମୁଁ ସ୍ତୋକ

ଭାବରେ ଅନୁଭୂତି ପ୍ରକାଶ ନ କଲେ କର୍ତ୍ତବ୍ୟଚ୍ୟୁତା ହେବି ବୋଲି ମନେ କରେଁ । ତାଙ୍କର ସ୍ୱଦେଶ-ପ୍ରେମ ଓ ଦେଶାତ୍ମବୋଧ-କବିତା-ମାନଙ୍କ ଭିତରେ ସ୍ଫୁଲିଙ୍ଗରେ ଦିଆଯାଇଥିବା କବିତାଗୁଡ଼ିକ ହିଁ ଶ୍ରେଷ୍ଠ ବୋଲି ଜଣାଯାଏ । ସ୍ଫୁଲିଙ୍ଗ ଭଳି କବିତା ଗ୍ରନ୍ଥ ଓଡ଼ିଶା କାହିଁକି, ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ଅଳ୍ପ ଅଛି । ଓଡ଼ିଶାରେ ଏହାକୁ ଗୋଟିଏ ସମର ଭାବର ସାହିତ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ମହାଭାରତୀୟ ଭାବ ଦେଶବାସୀଙ୍କ ହୃଦୟରେ ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ ଆମ୍ଭମାନଙ୍କର ଏହି ଦୀନା ହୀନା ଉତ୍କଳମାତାଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ମନରେ ସଞ୍ଚାର କରାଇବା ତାଙ୍କର ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ ଥିଲା । ଭାରତମାତା ଅପେକ୍ଷା ଉତ୍କଳମାତାଙ୍କୁ ସେ ବେଶି ଶ୍ରଦ୍ଧା କରୁଥିଲେ । ଉତ୍କଳ ଭୂମିର ବର୍ତ୍ତମାନ ଦୁର୍ଦ୍ଦଶା ଅବଲୋକନ କରି ତାଙ୍କର ପ୍ରାଣ ସବୁବେଳେ ଆକୁଳ ହେଉଥିଲା । ସେ ବିଷାଦଭରା କଣ୍ଠରେ ଗାଇଥିଲେ—

“ପଡ଼ିଅଛି ଭାଙ୍ଗି ଦୁର୍ଗ ବାରବାଟୀ,
କୋଣାର୍କ ଶିଖର ଚୁମ୍ବିଅଛି ମାଟି ।
ନୀଳଚକ୍ରବାନା ଲୋଟିଛି ଧୂଳିରେ,
ପୋତ ପଡ଼ିଅଛି ଚିଲିକା ବାଲିରେ ।
ଆଉ ନ ନାଚଇ ଓଡ଼ିଆ ବୋଇତ,
ନୀରଧି ତରଙ୍ଗ ରଙ୍ଗେ ଆଲୁଙ୍ଗିତ ।
ନୀରବ ଉତ୍କଳ ଶାରଳା ସଙ୍ଗୀତ ।
ହଜିଅଛି ଚିର ଏ ଜାତି ବିଭବ,
ରସାତଳେ ଲୀନ ଓଡ଼ିଆ ଗରବ ।
ଛିନ୍ନଭିନ୍ନ ଅଙ୍ଗେ ମରଣ ଉତ୍ସଙ୍ଗେ,
ନବ ଜାଗରଣ ଆଉ କି ସମ୍ଭବେ ?

ମାତୃଭୂମିର ହୀନ ଦଶା ତାଙ୍କର ତରୁଣ ପ୍ରାଣକୁ ସବୁବେଳେ କଷାଘାତ କରୁଥିଲା । ହତୋତ୍ସାହ ହୋଇ ମ୍ରିୟମାଣ ଅବସ୍ଥାରେ କର୍ମକୁ ଆଦରି ରହିବାର ନାରୀ ସେ ଜନ୍ମୁ ନ ଥିଲେ । ତାଙ୍କର ଆଶା ଥିଲା, ଅବଶ୍ୟ ଏ ଜାତି ପୁନର୍ବାର ତାର ଲୁପ୍ତ ଗୌରବକୁ ଫେରାଇ ଆଣିବା ପରେ ପଦଦଳିତ ନରନ୍ଧ୍ର ଓଡ଼ିଆ ପୁନର୍ବାର ସଗର୍ବ ମସ୍ତକୋତ୍ତୋଳନ କରି ପୃଥିବୀରେ ଆନ୍ତର୍ଜାତିକ ପଞ୍ଚାୟତରେ ଅନ୍ୟମାନଙ୍କ ସହିତ ସମାସନରେ ଉପବିଷ୍ଟ ହୋଇ ପାରିବ । ଏ ଆଶା ତାଙ୍କର ଥିଲା । ସେଥିପାଇଁ ସେ ଗାଇଥିଲେ—

'ନିରାଶାର ଗୀତ ନ ଘୋଷୁ ରସନା
ନ ବାଜୁ ତାହା ଏ ଜାତି ଶ୍ରବଣେ ।
ଦେଢ଼କୋଟି ପ୍ରାଣ ନବ ଜାଗରଣେ
ହିଅ ଉଠିବାକୁ ନବ ଜନମରେ ।
ଜପ । ଧୂଳି ତଳେ ରଚି ମୃତ୍ୟୁ-ଶେଯ
ହରାଇବେ ସର୍ବେ ନର ବୀର୍ଯ୍ୟ-ତେଜ ।
ଅନନ୍ତ ମରଣ ଏ ଜାତି କପାଳେ
ଲେଖି ନାହିଁ ବିଶ୍ୱଧାତ୍ରୀ
ଉଠିବେ ଉଠିବେ ଦେଢ଼କୋଟି ଆତ୍ମା
ଅମୃତ ପଥ ଯାତ୍ରୀ !

ଓଡ଼ିଆ ତରୁଣ ପ୍ରାଣରେ ଦିନେ ଉନ୍ମାଦନା ଆସିବ, ଏ କଥା ସେ ବିଶ୍ୱାସ କରୁଥିଲେ । ସାହସର ଅଭାବ ଓ ଅଜ୍ଞାନ-ଅନ୍ଧକାର ବଶରୁ ଓଡ଼ିଆ ଯୁବକ ତାର କର୍ତ୍ତବ୍ୟ ପଥରୁ ବିଚଳିତ ହେବ ନାହିଁ, ଏହି ସ୍ୱପ୍ନ ସେ ବାରବାର ଦେଖୁଥିଲେ ।

'କିଏ କହେ ନାହିଁ ଆମର ସାହସ ?
କିଏ କହେ ଆମେ ଅଜ୍ଞାନ ଅଳସ ?

କିଏ କହେ ମୃତ ଓଡ଼ିଆର ପ୍ରାଣ
ଚିର ଅବସାନ ତାହା ଗୌରବ ଠାଣ ।
ପର ପଦାହତ ଦୁର୍ବଳ ଭୀରୁ
ନିତ୍ୟ ଲଜ୍ଜେ ମ୍ରିୟମାଣ ?'

ଜାଗ୍ରତ ତରୁଣଙ୍କୁ ଲକ୍ଷ୍ୟ କରି ଲେଖିଥିଲେ—

"ଉଦ୍ଧରିବ ସେହି ଏ ଧାନ ଉତ୍କଳ
ରଙ୍ଗଭୂମି ଦିନେ ହେବ ଉର୍ଜସ୍ୱଳ ।
ଅନଙ୍ଗ ଯଯାତି ଆସିବେ ତ ଫେରି
ବାଜିବ ଓଡ଼ିଆ ଜୟ ତୁରୀ ଭେରୀ ।
ଜାଗିଅଛୁ ଆଜ ତରୁଣ କେଶରୀ
ନୀଳାଚଳ ପୁଣ୍ୟ ତୂଳେ
ବନ୍ଦନା ଗୀତି ଗାଇ ଅଛୁ ଜଳ
ତରଙ୍ଗ ସାଗର କୂଳେ ।" ଇତ୍ୟାଦି ।

୧୯୨୧ ସାଲରେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଯେତେବେଳେ ହିମାଳୟଠାରୁ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷରେ ଦେଶାତ୍ମବୋଧର ପ୍ରବଳ ତରଙ୍ଗ ବହିବାରେ ଲାଗିଲା, ସେତେବେଳେ ଦେଶର ଆବାଳବୃଦ୍ଧବନିତା ସବୁବେଳେ ଦେଶମାତୃକାର ସେବା କରିବାପାଇଁ ମନୋନିଯୋଗ କରିଥିଲେ; ଅସହଯୋଗ ଆନ୍ଦୋଳନର ପ୍ରଭାବ ଭାରତ ସନ୍ତାନଙ୍କ ହୃଦୟରେ ପ୍ରତିଫଳିତ ହୋଇଥିଲା । କୁନ୍ତଳାକୁମାରୀ ନିଜକୁ ସ୍ୱାଧୀନତା ସଂଗ୍ରାମର ଜଣେ କ୍ଷୁଦ୍ର ସୈନିକା ରୂପେ ତାଙ୍କର ଦେହ ଅର୍ପଣ କରିଅଛନ୍ତି । ତାଙ୍କର ଜାତୀୟ କବିତା ଅସଂଖ୍ୟ ଓଡ଼ିଆ ଯୁବକଙ୍କ ପ୍ରାଣରେ ଉନ୍ମାଦନା ଆଣିଥିଲା ।

ଆମେ ଆମ ଆଭ୍ୟନ୍ତରୀଣ ଦୁର୍ବଳତାବଶତଃ ନିଜ ଜାତିର ସ୍ୱାଧୀନତା ହରାଇ ବସିଛୁଁ । ଭାଇ ଭାଇ ଭିତରେ ଅଯଥା ବିଦ୍ରୋହ ସୃଷ୍ଟି କରି ବିଦେଶୀକୁ ନିଜ ଗୃହର ପ୍ରଭୁ କରିଦେଉଛୁଁ । ଆମେ ଯାହା ଅର୍ଜନ କରୁଛୁଁ, ହାଡ଼ ଭାଙ୍ଗି, ପରିଶ୍ରମ କରି, ମୁହଁର ଝାଳ ଭୁଣ୍ଡରେ ମାରି ଯାହା ସଞ୍ଚୟ କରୁଛୁଁ, ତାହା ବିଦେଶୀଙ୍କ ବିଳାସ ବ୍ୟସନରେ ଅକାତର ଭାବରେ ବ୍ୟୟିତ ହେଉଛି । ଏହି ମର୍ମନ୍ତୁଦ ଯନ୍ତ୍ରଣାକୁ ଲକ୍ଷ କରି କୁନ୍ତଳା ଲେଖିଥିଲେ—

କୁଳାଙ୍ଗାର ସୁତେ କି ସୁଖେ ଜନନୀ
ଧରିଛୁ ଦୁର୍ବଳ କୋଳେ
ମୁରୁଞ୍ଛି ନ ପାରୁ ଆମକୁ ସେତିକି
ମାତୃ ସ୍ନେହ ମାୟା ଭୋଳେ ।
ତେଣୁ କି ତୋହର କେଦାରେ କେଦାରେ
ସଜାଇ ରଖିଛୁ, ସ୍ୱର୍ଣ୍ଣ ଶସ୍ୟଭାରେ ।
ଅଯୋଗ୍ୟ ଆମେ ଲୋ ! ଆମ ଅରଜନ
ପର ପାଦତଳେ ଲୋଟୁଛି
ଆପଣା ବେଳକୁ ହାଣ କୁରାଢ଼ିରେ
ଭାଇ ଭାଇ ଗଳା କାଟୁଛି ।
ତିଳେ ପ୍ରେମ ଆଉ ନାହିଁ ଆମ ଘରେ
ଭାସୁଛୁଁ ଆପଣା ସୋଦର ରକ୍ତରେ
ହିନ୍ଦୁ ମୁସଲମାନ ଦୁଇ ବାହୁ ତୋର
ଦୁହିଙ୍କ ଭିତରେ ଦ୍ୱନ୍ଦ୍ୱ ଯୁଦ୍ଧ ଘୋର ।
ବାଟ ବିଦେଶୀଙ୍କୁ ବରଣ କରିଣ
ଜଗତରେ ଲୋକହସା ।
ଆମରି କରମ ଆମକୁ ଘାରୁଛି
କେ ଫେଡ଼ିବ ଆମ ଦଶା ?

ଯେତେଦିନ ପର୍ଯ୍ୟନ୍ତ ଭାରତବାସୀ ଭେଦଭାବ ଭୁଲି ଏକତା ପାଶରେ ଆବଦ୍ଧ ନ ହୋଇଛନ୍ତି, ସେତେଦିନ ପର୍ଯ୍ୟନ୍ତ ଭାରତର ମୁକ୍ତି ଅସମ୍ଭବ ।

"ଏକ ହେବେ ପ୍ରେମ ଭେଦାଭେଦ ଛାଡ଼,
ରକ୍ତଧାରେ ନୁହେଁ ଭକ୍ତିଧାରେ ବୁଡ଼ ।"

ଯେତେଦିନ ପର୍ଯ୍ୟନ୍ତ ଭାରତର ଏ ଅବସ୍ଥାର ଅବସାନ ନ ହୋଇଛି, ସେ ପର୍ଯ୍ୟନ୍ତ ଆମର ଭାଗ୍ୟ ଉଜ୍ଜ୍ୱଳ ହେବ ବୋଲି କହି ହେବ ନାହିଁ ।

କୁନ୍ତଳାଙ୍କର "କିଏ ଧୋଇବ କହ ଏ କଳଙ୍କ କାଳି" ପଦଟି ଆଜି ମଧ୍ୟ ପ୍ରତି ଓଡ଼ିଆ ପ୍ରାଣରେ ବୀଣାର ନିନାଦ ପରି ବାଜିଉଠୁଛି । କୁନ୍ତଳା ଦେବୀ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ ବୋଲି ତାଙ୍କର ସ୍ଫୁଲିଙ୍ଗ ଗ୍ରନ୍ଥ ଓଡ଼ିଶାର ଚତୁଃସୀମା ଭିତରେ ଆବଦ୍ଧ ରହିଲା । ଅନ୍ୟ କୌଣସି ଦେଶରେ ତାଙ୍କର ଜନ୍ମ ଘଟିଥିଲେ ଏ ଗ୍ରନ୍ଥ ରତ୍ନଟି କେତେ ସ୍ଥାନରେ କେତେ ଲୋକଙ୍କଦ୍ୱାରା ଆଦୃତ ହୋଇଥାନ୍ତା, ତାହାର କଳ୍ପନା କରିପାରୁ ନାହିଁ । ଭାବରେ, ଭାଷାରେ, ଲେଖନ ଭଙ୍ଗୀରେ, ସଙ୍ଗୀତର ଝଙ୍କାରରେ "ସ୍ଫୁଲିଙ୍ଗ" ଗୋଟିଏ ଅମୂଲ୍ୟ ରତ୍ନ । ହୃଦୟକୁ ସ୍ପର୍ଶ କଲାଭଳି, ପ୍ରାଣକୁ ମତାଇଲା ଭଳି ଜିନିଷ ସେଥିରେ ପୂର୍ଣ୍ଣ ହୋଇ ରହିଛି । ପୁରୁଣା ଓଡ଼ିଆ କବିତାରେ ଓଡ଼ିଆ ଜାତିର ଜୀବନ ବର୍ଣ୍ଣନା କରି ସାରିବା ପରେ ଶେଷରେ ସେ ଯେଉଁ କରୁଣ ଆହ୍ୱାନ କରିଛନ୍ତି, ତାହା ପ୍ରତି ଓଡ଼ିଆର କର୍ଣ୍ଣରେ ବାଜିବା ଉଚିତ ।

କିଏ ହସି ଦେବ ପ୍ରାଣ ଭାଇ ! ବିଶ୍ୱ ଡାକୁଛି କାହାକୁ !
କିଏ କାନ୍ଦି କାନ୍ଦି ଗାଇବ ଗୀତଟି ଆଗୁସାର ସବୁ ହେବାକୁ ?
କିଏ ବାନ୍ଧି ନେବ ଲୁଗା ପତାକା, ଉଠାଇବ ବୀର-କେତନ ?

ଆସ ଆରେ ଆସ ତରୁଣ ତପସ୍ୱି ! କୋଟି କଣ୍ଠ ଡାକେ ସଘନ ଏହିପରି କେତେ କେତେ ପଦରେ ସେ "ସ୍ଫୁଲିଙ୍ଗ" ପୁସ୍ତିକାଟିରେ ବାସ୍ତବରେ ଅଗ୍ନିର ଦାହକଣିକା ଫୁଟାଇ ଦେଇଛନ୍ତି ବୋଲି ତାଙ୍କର ପୁସ୍ତକଟିର ସାର୍ଥକତା ସମ୍ପାଦିତ ହୋଇଅଛି । ଆମ୍ଭମାନଙ୍କ ଦେଶର ପ୍ରାଚୀନ ସାହିତ୍ୟରେ ଆଦିରସର ଓ ପ୍ରାକୃତିକ ବର୍ଣ୍ଣନାମାନଙ୍କର ଯେ ବହୁଳତା ଦେଖାଯାଏ, ତାହା ଏ ଦେଶୀ ସାହିତ୍ୟର ଗୋଟିଏ ଆଦର୍ଶ ବୋଲି ଧରିବାକୁ ହେବ । ତଥାପି ଆଧୁନିକ ଯୁଗ ଭଳି ଦେଶାତ୍ମବୋଧ ପ୍ରାଚୀନ ସାହିତ୍ୟକାର କେହି ତାଙ୍କର ସାହିତ୍ୟରେ ସନ୍ନିବେଶିତ କରି ନଥିବା ସ୍ଥଳେ ଏ ଯୁଗରେ ଯେଉଁ ସାହିତ୍ୟକାର-ମାନଙ୍କ ସାହିତ୍ୟରେ ମନୁଷ୍ୟ ଜୀବନର ଗୋଟିଏ ବୃହତ୍ତମ ଭାବ-ପ୍ରାବଲ୍ୟର ଦ୍ୟୋତନା ଏତେ ସୁସ୍ପଷ୍ଟ ହୋଇ ଫୁଟିଉଠିଅଛି, ସେ ସାହିତ୍ୟ କାରମାନଙ୍କ ମଧ୍ୟରେ କୁନ୍ତଳାକୁମାରୀଙ୍କ ଜାତୀୟ ସାହିତ୍ୟ ପ୍ରତି ଅବ-ଦାନ ଯେ ବିଶିଷ୍ଟ ସ୍ମାରକ ହୋଇ ଚିରଦିନ ତାଙ୍କର ସ୍ଥାନକୁ ଗୋଟିଏ ବିଶିଷ୍ଟତା ଦାନ କରିଅଛି, ଏକଥା ନିଃସନ୍ଦେହରେ କୁହାଯାଇ ପାରିବ । ସେ ଆମର ଜାତୀୟ ସାହିତ୍ୟର ଅଗ୍ରଦୂତୀ ବୋଲି କହିଲେ ଏହା ବାହୁଲ୍ୟଦୁଷ୍ଟ ହେବନାହିଁ । ମେହେର କବି, ଫକୀରମୋହନ, ରାଧାନାଥ, ମଧୁସୂଦନ ପ୍ରଭୃତିଙ୍କର ଜାତୀୟଭାବଗର୍ଭକ କବିତା ଭିତରେ ଯେଉଁ ଭାବରହସ୍ୟ ଅବଗୁଣ୍ଠନ ମଧ୍ୟରେ ରହିଥିବା ଭଳି ଅତି ଅସ୍ପଷ୍ଟ ଭାବରେ ଲୋକଚକ୍ଷୁରେ ଉଦ୍‌ଭାସିତ ହୁଏ, କୁନ୍ତଳା ଦେବୀଙ୍କର ଜାତୀୟ ସାହିତ୍ୟ ସେହି ଅବଗୁଣ୍ଠନ ଆଡୁଆଳରୁ ସେହି ରହସ୍ୟ-ମୟ ଭାବକୁ ଦୁନିଆ ଆଗରେ ସ୍ପଷ୍ଟରୁ ସ୍ପଷ୍ଟତର କରି ବ୍ୟକ୍ତ କରି-ଦେଇଛନ୍ତି ବୋଲି ଆଜି ନାରୀକବିଙ୍କୁ ଜାତିର ଶତ ଅଭିବାଦନ କରୁଅଛି ।

"ଅଞ୍ଜଳୀ" ତାଙ୍କର ପ୍ରଥମ ସାହିତ୍ୟ ଜୀବନର ଅବଦାନ । ସେହି କବିତାଚୟର ମାଧୁରୀ ଉତ୍କଳର ସାହିତ୍ୟ ଲୋକରେ ସେହି କାଳରେ ଯେ ନାରୀ କବିଙ୍କ ପ୍ରତି ଗୋଟିଏ ସୁପ୍ରଶଂସିତ ମନୋଭାବ ସୃଷ୍ଟି କରିଥିଲା, ତାହାର ଅଭାସ ମୁଁ ପାଇଥିଲି । ଅଞ୍ଜଳୀର ରଚୟିତ୍ରୀଙ୍କର ସାହିତ୍ୟିକ ପ୍ରଚେଷ୍ଟା ଉତ୍କଳର ସାହିତ୍ୟ ଭଣ୍ଡାରକୁ ଯେ ଦିନେ ଆଲୋକିତ କରିବ, ଏହା! ଲୋକେ ସେଦିନୁଁ କଳ୍ପନା କରିଥିଲେ । ସେ କଳ୍ପନା ନିଷ୍ଫଳ ହୋଇଯାଇ ନାହିଁ । ଅଞ୍ଜଳୀ ପୁସ୍ତକର ପ୍ରଚ୍ଛଦପଠରେ ଯେଉଁ କ୍ଷୁଦ୍ର ବାଳିକାଟିର ଆବେଦନର ଆଲେଖ୍ୟ ଫୁଟିଉଠିଛି, ସମସ୍ତ କବିତାଗୁଡ଼ିକର ସେହି ଆଲେଖ୍ୟକୁ ପ୍ରତୀକ ଭାବରେ ଗ୍ରହଣ କରିହେବ । ସ୍ୱଚ୍ଛଧାର ଗଙ୍ଗାର ପବିତ୍ର ବାରିରାଶି ଭଳି ସେହି ବିଭୁଭାବପୂରିତ କବିତାଗୁଡ଼ିକ ପବିତ୍ର ସ୍ୱଚ୍ଛଧାର ଅବାଧଗତି ସାବଲୀଳ ଭଙ୍ଗୀମାରେ ବହିଯାଇଛି । ମୁମୁକ୍ଷୁ ଆତ୍ମାର ଆନ୍ତରିକ ଆକାଙ୍କ୍ଷା ଧରି ନମ୍ରଚିତ୍ତର ମିନତିଭରି ପ୍ରାର୍ଥନା ବେଗରେ କବିତାଗୁଡ଼ିକ ମଞ୍ଜୁଳ । ଭକ୍ତର ଭଗବାନଙ୍କ ପ୍ରତି ଆକ୍ଷେପ, ବିନୟ, ତାଙ୍କ ଚରଣରେ ନିଜର କାମନା, ବାସନା ଓ ଅଭିଳାଷକୁ କବି ଅବେଗମୟୀ ଭାଷାରେ ନିବେଦନ କରିଅଛନ୍ତି । ସେଥିକାର 'ପ୍ରାର୍ଥନା', 'ପୂଜା', 'ଗଲା ଦିନ ହାୟ ଗଲା ବିଭିଦରି', 'କହି ନ ପାରିବି' ପ୍ରଭୃତି ବହୁ କବିତାରେ ସନ୍ନିବେଶିତ ହୋଇଅଛି । କାରଣ ଅଞ୍ଜଳୀ ଅର୍ଚ୍ଚନା, ପ୍ରଭୃତି ପୁସ୍ତକରେ ନାରୀକବି ଭାଗବତ ମାର୍ଗ ଅନୁସରଣ କରିଅଛନ୍ତି । ଦାସ୍ୟ, ସଖ୍ୟ, ଶାନ୍ତରସରେ ତାଙ୍କର ଭକ୍ତି ଭାବର କବିତାଗୁଡ଼ିକ ରସାଣିତ ହୋଇଅଛି । ବୈଷ୍ଣବ ସାହିତ୍ୟ ଚର୍ଚ୍ଚା କରି ନ ଥିଲେ ଜୀବ ସହିତ ପରମର ଅଭେଦତା ଏବଂ ଆତ୍ମା ସହିତ ପରମାତ୍ମା ଭଗବାନଙ୍କର ନିଗୁଢ଼ ନିବିଡ଼ ବିରହ, ଅନୁରାଗ, ଆକ୍ଷେପ, ଅଭିମାନାଦିର ଭାବ ଯେ

ବର୍ତ୍ତମାନ ଓ ବର୍ଦ୍ଧିସଙ୍ଗତ ତାହା ସେ ରଚନା କରିଥାଆନ୍ତେ କାହିଁ ? ଖ୍ରୀଷ୍ଟାନଙ୍କର ବାଇବେଲ, ମୁସଲମାନଙ୍କର କୋରାନରେ ପ୍ରଭୁଙ୍କ ସହିତ ଭକ୍ତର ପ୍ରଭୁ ଓ ଦାସସମ୍ବନ୍ଧ ଛଡ଼ା ଆଉ କିଛି ସମ୍ବନ୍ଧର ସୀମା ଧରାଯାଇ ନାହିଁ । ହିନ୍ଦୁ ଜାତିର ଭାଗବତ, ରାସପଞ୍ଚାଧ୍ୟାୟୀ ପ୍ରଭୃତି ଗ୍ରନ୍ଥମାନଙ୍କରେ ମନୁଷ୍ୟ ସହିତ ଭଗବାନଙ୍କର ଯେଉଁ ବିଚିତ୍ର ଅନୁରାଗମୟ ସମ୍ବନ୍ଧ ରହିଅଛି, ତାହା ପ୍ରମାଣ୍ୟ । ବନ୍ଧୁତା ଓ ପ୍ରଣୟସୂତ୍ରରେ ତାହାଙ୍କ ସହିତ ମନୁଷ୍ୟର ସନାତନ ସମ୍ବନ୍ଧ । ଏହି ସମ୍ବନ୍ଧରେ ବିକଶିତ ଦ୍ୟୋତନା ଫୁଟିଉଠିଛି କୁନ୍ତଳାକୁମାରୀଙ୍କର ମନୋଜ୍ଞ କବିତାବଳୀରେ, ଅଞ୍ଜଳୀରେ, ଉଚ୍ଛ୍ୱାସରେ । ତାହା ବିଚାର କରି ସୁଧୀଜନଙ୍କୁ ଏହି ସମ୍ବନ୍ଧରେ ବ୍ୟାପକ ଭାବରେ ଜଣାଇବାର ସ୍ଥଳ ଓ ସମୟ ଆଜିକାର ଯେବେ ନୁହେଁ ।

ଉତ୍କଳ ଭାରତୀଙ୍କର 'ଆହ୍ୱାନ' ମୃତ ଜାତିର ଜୀବନର ମୃତସଞ୍ଜୀବନୀ ମନ୍ତ୍ର । ଏହି ପୁସ୍ତକ ଲିଖିତ ହୋଇଥିଲା ମାର୍ଚ୍ଚ ୧୧ ତାରିଖ ୧୯୩୦ ସାଲରେ । ପୁସ୍ତକଟି ବୀରାଙ୍ଗନାଙ୍କର ବୀର ଲେଖନୀନିଃସୃତ ଅଗ୍ନିକଣା । ସତ୍ୟାଗ୍ରହ ସମରରେ ଯେଉଁ ଗୁରୁଣୀ ବିଜୟଦୁନ୍ଦୁଭି ବଜାଇ ସମସ୍ତ ଦେଶର ଚିତ୍ତରେ ବିପ୍ଳବ ସୃଷ୍ଟି କରିଥିଲେ, ତାହାର ମୂଲ୍ୟ ସାମାନ୍ୟ ନୁହେଁ । ସେ ସମସ୍ତ ଦେଶବାସୀଙ୍କୁ ଆହ୍ୱାନ କରି ପ୍ରେରଣା ଦେଇ କହିଥିଲେ—

"ଏଣିକି କି ଭୟ ଜେଲ ଯିବାସନେ ?
ଏଣିକି କି ଭୟ ମୃତ୍ୟୁ ଅନଶନେ ?
ହବୁ ସହିବ ଏ ଭାରତର ହାଡ଼,
ନ ଭାଙ୍ଗେ ସହିଲେ ଏ ଦୃଢ଼ ପାହାଡ଼ !

ସେନାପତି ତବ କଲେଣି ଆହ୍ୱାନ,
ଅସ ଆଗ କିଏ ଦେବ ପ୍ରାଣ ଦାନ ।
ଆସ ଏକ ସଙ୍ଗେ ହିନ୍ଦୁ ମୁସଲମାନ,
ଶିଖ ପାର୍ଶି ବୌଦ୍ଧ ଇହୁଦୀ ଖ୍ରୀଷ୍ଟାନ ।"

ତରୁଣମାନଙ୍କୁ ଉଦ୍‌ବୋଧନ କରି ସେ କହିଥିଲେ—

ବୀରଗର୍ବେ ନାଚିଉଠେ କାର ଛାତି ?
ଦେଖି ପ୍ରେମମଦେ କେ ଉଠିଛି ମାତି ।
ଅଛି କିଏ ବୀର ଭାରତ ସନ୍ତାନ,
କହ ପ୍ରାଣ ଜାଗେ, ଦେଖାଉ ସମ୍ମାନ ।
କରିବ କେ ତାରଲାଗି ପ୍ରାଣ ଦାନ,
ଶକ୍ତି ଧାଡ଼ି କାର ବକ୍ଷଠାରୁ ଟାଣ ।
ମୁଖେ ହସି ହସି କେ ତେଜିବ ପ୍ରାଣ,
ଖୋଲା ଛାତି ପରେ ବନ୍ଧୁକ କମାଣ ।
ହଣା ହେବ ବୀର ଶିର ଗୋଟି ଗୋଟି,
ତୁମ ରକ୍ତ ଭୂଇଁ ତଳେ ଯିବ ଲୋଟି ।
ଗଙ୍ଗାଧାରା ସଙ୍ଗେ ରକ୍ତଧାରା ମିଶି,
ପୋଛିନେବ ଦୁଃଖ ତମଘୋର ନିଶି ।
ପୂର୍ବକୃତ ପାପ ତହିଁ ଯିବ ମିଶି ।"

ଧର୍ମଯୁଦ୍ଧରେ ନିରସ୍ତ୍ର ନିର୍ଭୀକ ବୀର ସୈନିକ ନିଜର ମହା-ମୂଲ୍ୟବାନ୍ ଜୀବନକୁ ମହାଭାରତର ସ୍ୱାଧୀନତା ବେଦୀ ଉପରେ ବଳିଦାନ କରିବାକୁ ବାହାରିଥିବା ବେଳେ ଏହି ବୀରାଙ୍ଗନାଙ୍କର ଅମର ଗୀତ ଅଦମ୍ୟ ଉତ୍ସାହ ଆଣି ଦେଇଥିଲା ।

ମହା ପବିତ୍ର ସମର ଭୂମିରେ ସର୍ବସ୍ୱ ପ୍ରଦାନ କଲେ, କର୍ତ୍ତବ୍ୟ ଶେଷ ହେଲ ନାହିଁ । ଅଗ୍ନି ପରୀକ୍ଷାରେ ନିଜକୁ ପରଖି ଦେଖିବାକୁ ହେବ । ତରୁଣକୁ କପରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ହେବ, ତାହାର ଇଙ୍ଗିତ ଏସ ଦେଇଛନ୍ତି—

"ଆଇନ ଅମାନ୍ୟର ଜଳେ ଅଗ୍ନିକୁଣ୍ଡ,
ମୁଣ୍ଡମାଳା ତବ ତହିଁ ହେବ ରୁଣ୍ଡ ।
ପୁରୋହିତ ନିଜେ ଗାନ୍ଧି ଯଜ୍ଞାସନେ,
କେ ଦେବ ଆହୁତ ଆସ ହେ ବନ୍ଧନେ ।
କେତେ ବେତ ମାଡ଼ କେତେ କାରବାସ,
ଦ୍ୱୀପାନ୍ତର ରାଜ୍ୟାନ୍ତର ପ୍ରାଣନାଶ ।
କ୍ଷୁଧା ହରତାଳ ପୋଲିସର ଲାଠି,
ମୁଷ୍ଟି ପଦାଘାତ ସହିବ ଏକାଠି ।
କଳି କୋହିବ ହେ ! ଯନ୍ତ୍ରଣା ତୁମ୍ଭର,
ସହିବାକୁ ବାରେ ହୁଅ ! ଅଗ୍ରସର ।"

ଦେଶର ଅବସ୍ଥାରେ କବି ବ୍ୟାକୁଳ ତରୁଣଙ୍କୁ ଆବେଦନ କରି କହିଛନ୍ତି—

"ଏବେ କି ଯନ୍ତ୍ରଣା ନ ସହୁଛ ଭାଇ,
ଅନ୍ନ ବସ୍ତ୍ର ବେନି ନେଲ ଯେ ଛଡ଼ାଇ ।
ଦୁର୍ଭିକ୍ଷ ଦାରିଦ୍ର୍ୟ ବଡି ରୋଗଦାଉ,
ନଣି କରଭାର ଯାରେ ତୁମ୍ଭ ଆୟୁ ।
ନାହିଁ ସେ ଭାରତ ଦେବତାବାଞ୍ଛିତ,
ଆଜ ଅନାଥିନୀ ଜଗତେ ଲାଞ୍ଛିତ ।
ସେ କୃଷୀ ଶିଳ୍ପୀଙ୍କ ଦୁର୍ଦ୍ଦଶାର କଥା,
ଭାବିଲେ କା ହୃଦେ ନ ହେବଟି ବ୍ୟଥା ।

ପେଟରେ ନାହିଁ ଦାନା ଦେହରେ ନାହିଁ କନା,
ଦିନ ରାତି ରୋଗ ଚିକିତ୍ସ ଭାବନା ।
ପଖାଳ ଗଣ୍ଡାକୁ ଚିକେ ନାହିଁ ଲୁଣ,
ବାହୁନିବା କିସ ଶାସନର ଗୁଣ ।"

ଏ ଦୀନହୀନ କାଙ୍ଗାଳ ଅବସ୍ଥା ପାଇଁ ଦାୟୀ କିଏ ? ସୁନାର ଘରକୁ କିଏ ଚୂନା କଲା ? କେଉଁ ପିଶାଚର ପାପଦୃଷ୍ଟି ଶସ୍ୟ-ଶ୍ୟାମଳା ଭାରତକୁ ଅନ୍ତଃସାରଶୂନ୍ୟ କରିଦେଲା ?

ଦେବତାବାଞ୍ଛିତ ଭାରତର ପୂର୍ବ ବିଭବ ସ୍ମରଣ କରାଇ କବି ଦେଶର ତରୁଣ ବୀରପୁଙ୍ଗବ ମାନଙ୍କୁ ଦେଶମାତୃକାଙ୍କର ପରାଧୀନତା-ଶୃଙ୍ଖଳ ଛିନ୍ନ କରିବା ନିମିତ୍ତ ପ୍ରାଣବଳି ଦେବାପାଇଁ ପ୍ରସ୍ତୁତ ହେବାକୁ ଆହ୍ୱାନ କରିଛନ୍ତି । ଯେଉଁ ଦେଶ ସ୍ୱର୍ଣ୍ଣପ୍ରସୂ ଥିଲା, ନୀଳାବ୍ଧି ଓ ହିମାଦ୍ରି ଯାହାର ସୀମା, ଯାହାର ବୀର ପୁତ୍ରମାନେ ଯାଭା, ସୁମାତ୍ରା, ବୋର୍ଣ୍ଣିଓ ପ୍ରଭୃତି ଦେଶରେ ବାଣିଜ୍ୟ କରୁଥିଲେ, ଯାହାର ଦୁହିତାମାନେ ଧନୁର୍ଦ୍ଧାରିଣୀ କୋଟିକାରୁକଳାଲୀଳାଗରବିଣୀ ଥିଲେ, ଆଜି ତାର ଦୀନହୀନ ମଳିନ ବେଶ ଅବଲୋକନ କରି କେଉଁ ଲୋକର ଧୈର୍ଯ୍ୟ ରହିବ ?

ଭାଇ ଓ ଭଉଣୀମାନେ ! ସ୍ୱାଧୀନ ଭାରତ କିପରି ପରାଧୀନ ହେଲା, ୭୦୦୦ ମାଇଲ ଦୂରରୁ ଇଂରେଜମାନେ ଆସି ନିଜର କୌଶଳ ବଳରେ କିପରି ଏ ଦେଶକୁ କରଗତ କଲେ ତାହା ଆପଣମାନେ ଇତିହାସରେ ପଢିଥିବେ । ବର୍ତ୍ତମାନ ଭାରତର ଆର୍ଥିକ ଓ ରାଜନୈତିକ ଦୁରବସ୍ଥା ସମ୍ବନ୍ଧରେ ଅନେକ ଚିନ୍ତା ପ୍ରବନ୍ଧ ପଢିଥିବେ । ଭାରତର ଅନେକ କୃତୀ ସନ୍ତାନ କାବ୍ୟ କବିତା ଛଳରେ ଏ କଳଙ୍କମୟ କାହାଣୀ ବର୍ଣ୍ଣନା କରିଯାଇଛନ୍ତି । ଓଡିଆ,

ବଙ୍ଗଳା, ହିନ୍ଦି ଓ ଇଂରେଜୀଭାଷାରେ ଏ ଧରଣର କେତେକ ଲେଖା ପଢିବାର ମୋର ସୌଭାଗ୍ୟ ଘଟିଛି, କିନ୍ତୁ ସଂକ୍ଷେପରେ ହୃଦୟକୁ ସ୍ପର୍ଶ କଲାଭଳି ଲେଖା ମୁଁ ଖୁବ୍ କମ୍ ଦେଖିଛି । ଏହି ଅଳ୍ପସଂଖ୍ୟକ ଲେଖା ଭିତରେ କୁନ୍ତଳାଙ୍କର ଲେଖାର ବିଶିଷ୍ଟ ସ୍ଥାନ ଅଛି, କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ ଜାତି ଏଥି ପାଇଁ ଗୌରବାନ୍ୱିତ । ଯଦି କୁନ୍ତଳାଙ୍କ ଲେଖାରୁ ଚୟନ କରି କେତେକ ଅଂଶ ଇଂରେଜୀ ଓ ଅନ୍ୟାନ୍ୟ ପ୍ରାଦେଶିକ ଭାଷାମାନଙ୍କରେ ପ୍ରକାଶିତ ହୁଅନ୍ତା, ତାହାହେଲେ ଏ ମହୀୟସୀ ରମଣୀଙ୍କ ଅମର ଲେଖନୀ କି ଅପୂର୍ବ ରୂପ ସୃଷ୍ଟି କରିଛି, ତାହା ଜଗତ ବୁଝିପାରନ୍ତା ।

ଯେଉଁ ଜାତି ଆମକୁ ପଙ୍ଗୁ କରି ଦେଇଛି, ଆମର ସର୍ବସ୍ୱ ଲୁଟି କରି ନେଇଛି, ତାର କୁଟ ନୀତିକୁ ଆମେ କିପରି ଅନୁମୋଦନ କରିବା ? ତାକୁ ଆମେ କିପରି ବିଶ୍ୱାସ କରିବା ? ସତ୍ୟ ଓ ଅହିଂସା ନୀତି ଅବଲମ୍ବନ କରୁଥିବା ଲୋକେ ବୋଧ ହୁଏ ବ୍ରିଟିଶ ଜାତିକୁ ଘୃଣା କରିବା ଓ ଦୋଷ ଦେବା କଥାକୁ ଅନୁମୋଦନ କରୁ ନ ଥିବେ । ଏ ଦେବଦୁର୍ଲଭ ନୀତି ସ୍ୱର୍ଗର ଚତୁଃସୀମା ଲଙ୍ଘନ କରି ମର୍ତ୍ତ୍ୟକୁ ଅବତରଣ କରିବ ବୋଲି ବିଶ୍ୱାସ ହେଉ ନାହିଁ । ସ୍ୱର୍ଗର ଗଙ୍ଗା ମର୍ତ୍ତ୍ୟକୁ ଆସି ମର୍ତ୍ତ୍ୟ ଭୂମିକୁ ଶସ୍ୟ ଶ୍ୟାମଳା କରିବ ବୋଲି ଯେଉଁମାନେ ଆଶା କରୁଛନ୍ତି, ସେମାନେ ଦିବାସ୍ୱପ୍ନ ଦେଖୁଛନ୍ତି ବୋଲି ମୋ ମନେ ହୁଏ । ତୃଷାତୁର ଲୋକର ମୁଖରୁ ଜଳପାତ୍ର ଛଡ଼ାଇ ନେଲେ ତା ପ୍ରାଣ କିପରି ରହିବ ? ଋଷିପୁଙ୍ଗବଙ୍କ କଥା ଏଠାରେ କହୁ ନାହିଁ । ଜଗତରେ ଋଷିଙ୍କ ସଂଖ୍ୟା ଖୁବ୍ କମ । କୁନ୍ତଳା ଏହା ଜାଣିଥିଲେ, ଭୋକିଲା ଲୋକଠାରୁ ଭାତ ଥାଳୀ ଛଡ଼ାଇ ନେଲେ ସେ କଅଣ କରେ ? ଯେଉଁମାନେ ଆମର ଭିତରେ

ଧୂଳି ଦେଇଛନ୍ତି, ପିଠିକୁ ନ ମାରି ପେଟକୁ ମାରିଛନ୍ତି, ତାଙ୍କ ପ୍ରତି ଆମର କପରି ମନୋବୃତ୍ତି ହେବା ଉଚିତ, ତାହାହିଁ କୁନ୍ତଳା ଇଙ୍ଗିତ କରିଅଛନ୍ତି—ବିଦ୍ରୂପାତ୍ମକଭାଷାରେ ।

"ବିଞ୍ଚି ମହାରୋଗ ମରି ସ୍ୱର୍ଗବାସ,
ଅର୍ଦ୍ଧମୃତ ଜୀବେ ଜାତି ମୃତ୍ୟୁ ନାଶ ।
ଶୃଗାଳ ଜୀବନେ କି ଲୋଡ଼ା ଆମର ?
ସିଂହ ସରି ପ୍ରାଣ ତେଜିବୁଁ ଏଥର ।"

ଭାରତର ଧର୍ମ ଆଜି ମୃତ, ଅସାଡ଼, କାରଣ, ଯେଉଁ ଧର୍ମ ମନୁଷ୍ୟକୁ ମନୁଷ୍ୟ ଭଳି ବଞ୍ଚିବାରେ ସହାୟତା କରେ ନାହିଁ, ଯେଉଁ ଧର୍ମ ମନୁଷ୍ୟକୁ ଜଡ଼ତାପଙ୍କରେ ବୁଡ଼ାଇଦିଏ, ସେ ଧର୍ମ ମଧ୍ୟ ଭାରତର ଗୋଟାଏ ବନ୍ଧନ । ଯେଉଁ ଜାତିର ସ୍ୱାଧୀନତା ଲଭିନାହିଁ ଧର୍ମ ଏବଂ ତାହାହିଁ ଏକମାତ୍ର କାମ୍ୟ ହେବା ଉଚିତ । ସେଥିପାଇଁ କବି କହୁଛନ୍ତି:—

"ଧର୍ମେ କର୍ମେ ସବୁ ଦେବୁଁ ଜଳାଞ୍ଜଳି
ଦାସଧର୍ମ ମୁକ୍ତ ମନେ ନେବୁଁ କଳି ।
ଦେଖ ଆମ ଧର୍ମକର୍ମ ଜପାମାଳି
ଅନ୍ତରେ ଚକ୍ର ଜୀବନ ସଞ୍ଚାଳି ।
ପୂଜା ନମାଜରେ ନାହିଁ ପ୍ରୟୋଜନ
ବନ୍ଦୀଶାଳ ଆମ ଇନ୍ଦ୍ରନିକେତନ ।"

ଭାରତକୁ ସ୍ୱାଧୀନ କଲା ପରେ ଅନ୍ୟ କଥା ସବୁ କରିବା:—

"ଯେ ଦିନ ସ୍ୱାଧୀନ ହେବ ଭାରତ
ସେ ଦିନ ପଢିବୁଁ ଗୀତା ଭାଗବତ ।

କୋଉଣ ବା ବ୍ୟମାୟୂଣ ଉଲ୍ଲାସରେ
କରିବୁଁ ଆବୃତ୍ତି ସ୍ୱାଧୀନ ସ୍ୱପ୍ନରେ ।”

ଏହିପରି ଭାବରେ ସେ ଆହ୍ୱାନ କରିଛନ୍ତି, ଝିଙ୍ଗାସିଛନ୍ତି, ଦେଶବାସୀଙ୍କଠାରେ ବିପ୍ଳବ ପ୍ରେରଣା ଗଳିତ ଧାତୁ ସ୍ରୋତ ଢାଳିଦେଇଛନ୍ତି । ପୁରୁଷଜାତି ଯଦି ଦେଶର ମୁକ୍ତି ନିମନ୍ତେ ପ୍ରାଣ ଦାନ କରିବାକୁ, ଆତ୍ମତ୍ୟାଗ କରିବାକୁ କୁଣ୍ଠିତ ହେବ, ତେବେ ସେଠାରେ ନାରୀର କର୍ତ୍ତବ୍ୟ ଯେ ଜ୍ୱଳନ୍ତ, ତାହାର ଇଙ୍ଗିତ କରିଛନ୍ତି କବି । ସେ କହୁଅଛନ୍ତି:—

“ପଛଘୁଞ୍ଚା ଆଉ ନ ଦିଅ ଏ ଥର
ନିଅ ପରିଶୋଧ ମଣିଷପଣର ।
କଅଁ ଜଗତଟା ଅବଜ୍ଞା ଦୃଷ୍ଟିରେ
ଶତ୍ରୁ ଯେ ଚାହିଁବେ ତେତିଶ କୋଟିରେ ।
ତାଠାରୁ ବରଞ୍ଚ ଝାସ ଏ ଅଗ୍ନିରେ
ଯାଉ ଦେହ, ନାମ ରହୁଛି ମନ୍ତ୍ରରେ ।
ସ୍ୱରାଜ ଆମର ଜନ୍ମ ଅଧିକାର
ନ ମିଳେ ଯଦି ତା, ଧ୍ୱଂସ ଆପଣାର
ସାଧି ନିଜ ହାତେ ମର ଏକା ଥରେ
ମିଶୁ ହିନ୍ଦୁସ୍ଥାନ ସିନ୍ଧୁ ଗରଭରେ ।
ହେ ପୁରୁଷେ ! ଯଦି ନ ଉଠ ଏ ଥର
ଆମେ ରଣବେଶେ ହେବୁଁ ଅଗ୍ରସର ।
ତୁମେ ଯଦି ଭୟେ ଦିଅ ପଛଘୁଞ୍ଚା
ଆମେ ଟେକି ଦିବୁଁ ଆମ ଲଜ୍ଜାକୁ ।

ଆମେ ନାରୀଗଣ କୋଣରୁ ବାହାରି
ଧରିବୁଁ ଅସହଯୋଗ ତରବାରି ।
ଶାନ୍ତି ସତ୍ୟାଗ୍ରହ ମହାରଣ ସ୍ଥଳେ ।
ଶୋଭାଯାତ୍ରା କରି ଯିବୁଁ ଦଳେ ଦଳେ
ଆମେ ଭାରତର ଶକତି ସଂହତି
ଥିଲେ ଭୀତ ଶତ୍ରେ ନାହିଁ ବୈରି ପ୍ରତି ।
ଯାଉ ପଛେ ପ୍ରାଣ, ଥାଉ ଦେଶମାନ
ରଖି ଜାଣୁ ଆମେ ସ୍ୱଧର୍ମ ସମ୍ମାନ ।
ଭାରତର ନାରୀ ନୋହୁଁ ଆମେ ହୀନା
ଷୋଳ କୋଟି ଆମେ ନୋହୁଁ ଅଭାଗିଣୀ ।
ଆମ ମାଆ ଥିଲେ ଲକ୍ଷ୍ମୀ ଦୁର୍ଗାବତୀ
ଆମେ କର୍ମଦେବୀ ପଦ୍ମିନୀ ସନ୍ତତି ।
ସାଧନା ଆମର ଭାରତ ଉଦ୍ଧାର
ମହାଶକ୍ତି ଅସ୍ତ୍ରେ ମ୍ଲେଚ୍ଛର ସଂହାର ।
ତା ଉଚିତ ଦଣ୍ଡବିଧାନ ପ୍ରୟାସେ
ଯୋଗି ଦେବୁଁ ଶକ୍ତି ଅରଟେ ଉଲ୍ଲାସେ ।
ଶକ୍ତିମୟୀ ହାତେ ଧରଣି ଅରଟ
ଭାଙ୍ଗିବୁ ବଇରି ଚକ୍ର କୂଟ ନଟ ।
ଜାତୀୟର ନିଗଡ଼ ଫେଡ଼ିବା କାରଣ
ଆମ ହସ୍ତେ ସେହି ହେବ ସୁଦର୍ଶନ ।
ଯନ୍ତ୍ରବଳ ନୁହେଁ ଆତ୍ମିକ ଶକତି
ଆମେ ଯେ ତହିଁର ସଜୀବ ମୂରତି ।
ସ୍ୱଦେଶୀବର୍ଜନବ୍ରତ ଦୃଢ଼ ପାଳି
ଦର୍ପୀଙ୍କ ଶାସନ-ଯନ୍ତ୍ର ଦେବୁଁ ଟାଳି ।”

ଦେଶର ନାରୀ ଚେତନାକୁ ଉଦ୍‌ବୁଦ୍ଧ କରି କବି କହନ୍ତିଛନ୍ତି:--

"ଗାଅ ହେ ଭଉଣି ! ଅରଟର ଗୀତ
ଅରଟରେ ଆମ ସାଧନା ବହିତ ।
ସବ୍ ବଳ ତହିଁ କରିବା ନିହିତ
ଆଣିବା ଫେରାଇ ସୁବର୍ଣ୍ଣ ଅତୀତ ।
ଅରଟର ଆମେ ଜୀବନ ସମ୍ବଳ
ଅରଟ ଯେ ଏକା ଭାରତର ବଳ ।
କୋଟି ମେସିନ୍‌ଗନ୍ ଲକ୍ଷ ରଣତରୀ
ଆଯୁତ କମାଣ ନୁହେଁ ତାକୁ ସରି ।
ଅରଟକୁ, କହ, କି ଅସ୍ତ୍ର ନାଶିବ ?
ଅରଟ ପ୍ରଭାବେ ନିଜେ ନାଶଯିବ ।"

କବି ସ୍ୱାଧୀନତା ଲାଭ କରିବାର ଅସ୍ତ୍ର ଅରଟକୁ ଜଗଦ୍ଧାତ୍ରୀ ଶକ୍ତିଙ୍କର ପ୍ରତୀକ ରୂପେ ଦେଖିଛନ୍ତି । ଅରଟ ଜଡ଼ କାଷ୍ଠଖଣ୍ଡ ନୁହେଁ । ଏହା ଭାରତର ଜାତୀୟ ଅସ୍ତ୍ର । ଏହାର ବଳରେ ସ୍ୱାଧୀନତା ଲାଭ ହେବ ବୋଲି ସେ ବିଶ୍ୱାସ କରୁଥିଲେ :—

"ଖଦଡ଼ବସନା ଅରଟ ସୁନ୍ଦରୀ
ଜଗଦ୍ଧାତ୍ରୀ ଉଠ ପାର୍ବତୀ ଶଙ୍କରୀ !
ହେ ଭବାନୀ ! ତୁମ ବିଭବେ ଭାରତ
ହୋଇବ ମୁକତ, ହୋଇବ ମୁକତ ।
ଉଠ ରଣଚଣ୍ଡୀ ଅରଟ ଧାରଣୀ !
ହେ ମହା ଭୈରବୀ ଭାରତ ତାରଣୀ !
ଅରଟେ ସୂତା ତୁମରି ସାଧନା
ଅରଟେ ଭାରତ ମୁକ୍ତି ଉଦ୍‌ଯାପନା ।

ଖଦଡ଼ବସନା ଅରତ ସୁନ୍ଦରୀ
ଜଗଦ୍ଧାତ୍ରୀ ଜୟ ଉମା କ୍ଷେମଙ୍କରୀ !"

ନାୟିକାଙ୍କ ଲେଖାରୁ ଓ ଭାବରୁ ଅନୁମିତ ହୁଏ, ସେ ବହ୍ନିବାଦିନୀ ଥିଲେ । ଶାନ୍ତି, ଅହିଂସା, ସତ୍ୟ, ପ୍ରଭୃତି ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶିତ ପଥକୁ ସେ ସ୍ପୃହଣୀୟ ବୋଲି କହିଅଛନ୍ତି ସତ, କିନ୍ତୁ ଭାବୁକ ପାଠକ ଭଲ କରି ନିରେଖିଲେ ଦେଖିବେ ଯେ, ନିରସ୍ତ୍ର ଭାରତବାସୀଙ୍କ ପାଇଁ ସେ ବାଧ୍ୟ ହୋଇ ମହାତ୍ମା ଗାନ୍ଧୀଙ୍କ ମତକୁ ସମର୍ଥନ କରି ଦେଶକୁ ଆହ୍ୱାନ କରିଅଛନ୍ତି । ନଚେତ୍ ତାଙ୍କ ଅନ୍ତରର ନିର୍ଦ୍ଦେଶ, ତାଙ୍କର ମାର୍ଗ ଭିନ୍ନ । ସେ କହୁଅଛନ୍ତି :—

"ଅଜା ହୋଲିବେଳେ ଆସିଛି ଆହ୍ୱାନ
ଫଗୁଖେଳେ ଆଉ ନ ବଳେ ପରାଣ ।
ତାଲି ସ୍ୱ ରୁଧିର ଅବିର ବଦଳେ
ହୁଅ ଫଗୁଖେଳେ ମାତିବା ସକଳେ ।
'ଜୟ ଜଗନ୍ନାଥ' ଉଚ୍ଚେ ଦେଇ ଡାକ
ଜୟ ଭାରତର ବୀର ପୁତ୍ରଯାକ !
ପୂର୍ବେ ଆହେରିଆ ଉତ୍ସବେ ଯେସନେ
ରାଜପୁତେ ଦୋଳ ପରବ ପାଳନେ
କରୁଥିଲେ ବେଶ ଦୌଭାଗ୍ୟ ନିର୍ଣ୍ଣୟ
ତେସନେ ଜୟ ହେ ! ତେଜ ଦକା ଭୟ ।
ଘଣ୍ଟି ଘୋଡ଼ାଇଣ ରଖିବେ ଶ୍ରୀହରି
ଜୟ ସୁନିଶ୍ଚୟ, ନାଶ ଯିବେ ଅରି !"

ଉନବିଂଶ ଶତାବ୍ଦୀରେ ଭାରତୀୟା ବହ୍ନିବଣୀ ବୋମ୍ବେଇର ମାଡ଼ାମ୍ କାମା ଉଗ୍ରବହ୍ନିବାଦରେ ବିଶ୍ୱାସିନୀ ଥିଲେ । ତାଙ୍କର ସମୟ

ଜୀବନ ୟୁରୋପରେ ଓ ଅମେରିକାରେ ଭାରତର ମୁକ୍ତି ପାଇଁ ଦାବୀ କରିବାରେ କଟିଥିଲା । ଜାତିସଙ୍ଘରେ ଭାରତ ପ୍ରତି ବ୍ରିଟିଶ୍ ଜାତିର ଅନ୍ୟାୟର ପ୍ରତିବାଦ କରି, ସେ ପ୍ରଥମେ ଗୋଟିଏ ପ୍ରସ୍ତାବ ଆଗତ କରି ପାଶ୍ କରାଇଥିଲେ ଓ ଯେଉଁଠି ଯାଉଥିଲେ, କଂଗ୍ରେସ ପ୍ରସ୍ତୁତ ଭାରତର ଜାତୀୟ ପତାକା ହାତରେ ଧରି ଯାଉଥିଲେ । କୁନ୍ତଳା-କୁମାରୀଙ୍କର ଲେଖାରୁ ଅନୁମିତ ହୁଏ, ଭାରତର ମୁକ୍ତିସଂଗ୍ରାମରେ ଯେଉଁମାନେ ରକ୍ତବିଳାସୀ ଥିଲେ, ସେ ସେହିମାନଙ୍କ ନୀତିକୁ ବିଶ୍ୱାସ କରୁଥିଲେ ।

ପ୍ରତ୍ୟେକ ରାଜନୀତିକ ସମାସ୍ୟା ସହିତ ଯୋଗ ନ ଦେଲେହେଁ କୁନ୍ତଳାକୁମାରୀ ଦେଶର ସମାସ୍ୟା ସମାଧାନ ପାଇଁ ଯେଉଁ ମତ ଓ ପଥକୁ ବିଶ୍ୱାସ କରୁଥିଲେ ବୋଲି ଅନୁମିତ ହୁଏ, ତାହା ଆଭାସ, ଇଙ୍ଗିତରେ ପ୍ରକାଶ କରିବା ଯେ ଅତ୍ୟନ୍ତ ସାହସିକତାର ଓ କବିଙ୍କ ଶକ୍ତିର ଓ ମାନସିକ ସ୍ୱାଧୀନତାର ବିଶିଷ୍ଟ ପରିଚୟ ଦିଏ, ଏହା କହିବା ବାହୁଲ୍ୟ । ଫଳରେ ତାଙ୍କ ପୁସ୍ତିକା ସେହି କାଳରେ ବାଜ୍ୟାପ୍ତ ହୋଇଥିଲା । ସେ ଯଦି ପ୍ରତ୍ୟକ୍ଷ ରାଜନୀତି ସହିତ ସଂସ୍ରବ ରଖି ଉତ୍କଳରେ ସେହି କାଳରେ ଅବସ୍ଥିତି କରୁଥାଆନ୍ତେ; ତେବେ ସେ ଯେ ଆମର ଜାତୀୟ କବି ଶ୍ରୀ ବୀରକିଶୋର ଦାସଙ୍କ ଭଳି ରାଜ-ରୋଷରେ ପଡ଼ି କେବଳ ତାଙ୍କ ବିପ୍ଳବବାଦୀ ସାହିତ୍ୟ ଯୋଗୁଁ ୩ ବର୍ଷ କି ତା ଠାରୁ ବେଶି କାଳ ବନ୍ଦୀଶାଳରେ ରହିଥାଆନ୍ତେ ଏ କଥାରେ ସନ୍ଦେହ ନାହିଁ । ରୁଷୋ, ଭଲ୍‌ଟେୟାର ଫ୍ରାନ୍ସ ଦେଶର ବିପ୍ଳବର ଗଢ଼ା ତିଆରି କରି ପୃଥିବୀରେ ଅମର ହୋଇଛନ୍ତି । ବିପ୍ଳ-ବିଣୀ ଜୁଆନ୍ ଅଫ୍ ଆର୍କ୍ ତାଙ୍କର ସତ୍ୟଭାଷଣ ଅପରାଧଜନିତ ରାଜ-

ବେଷରୁ ଜୀବନ୍ତ ଦଗ୍ଧ କରାଯାଇଥିଲେ । ଯେଥି ପାଇଁ ସେ ଅଦ୍ୟାପି ଜନସମାଜରେ ବଞ୍ଚିରହିଛନ୍ତି ।

ଆମ କବି କୁନ୍ତଳାକୁମାରୀ ତାଙ୍କର ସମସୋହିତ୍ୟ ଲଟି ଉତ୍କଳର ରାଜନୀତିକ ଇତିହାସରେ ଏବଂ ଉତ୍କଳ ସାହିତ୍ୟର ଇତିହାସରେ ଯେ ଗୋଟିଏ ଉଜ୍ଜ୍ୱଳ ତାରକା ପରି ଚିରଦିନ ରଶ୍ମି-ଦାନ କରିବେ, ଏଥିରେ ସନ୍ଦେହ ନାହିଁ । ସମସ୍ତ ଦେଶର ଅଭାବରେ ଓ ଦୈନ୍ୟରେ ଯାହାଙ୍କ ହୃଦୟ ତରଳି ଯାଏ, ଯେ ସାହିତ୍ୟର ଭାଷାରେ ନିଜର ଆକୁଳ ହୃଦୟର ସାନ୍ତ୍ୱନା ଅଣିବାକୁ ଚେଷ୍ଟା କରନ୍ତି, ସେହି ତ ଦୁନିଆର ସ୍ୱଭାବକବି । କୁନ୍ତଳାକୁମାରୀଙ୍କ ଜୀବନରେ ମନସ୍ୱିତା ଥିଲା ଗୋଟିଏ ବଡ କଥା । ତାଙ୍କର କହିବାର କଥାରେ, ଭାବପ୍ରକାଶରେ, ଛନ୍ଦରେ, ସ୍ୱରରେ, ରଚନାର ଗତିରେ ଓ ବେଗରେ ଏହି ମନସ୍ୱିଭାବ ଉତ୍କଟ ଭାବରେ ଫୁଟିଅଛି ବୋଲି ସେ ପ୍ରଶଂସନୀୟା ଅଟନ୍ତି । ସେ ଯଥାର୍ଥରେ ପ୍ରାକୃତିକ ଭାବର କବି । ସହଜ ସରଳ ଓଜସ୍ୱିନୀ ତାଙ୍କର ରଚନା ।

**ତପସ୍ୱିନୀ କବି କୁନ୍ତଳା—**

କୁନ୍ତଳାକୁମାରୀଙ୍କର 'ଅର୍ଚ୍ଚନା'ରେ ଭକ୍ତିର ସୁରତରଙ୍ଗିଣୀ ପ୍ରବହମାନା । ତାଙ୍କ କବିତାରେ ଦୀନଭାବ ଯେତିକି ଫୁଟିଛି, ଭଗବାନଙ୍କର ପ୍ରସାଦ ଲଗି ବ୍ୟାକୁଳ ଭାବ ତାହାଠାରୁ ଅଧିକତର ପରିସ୍ଫୁଟ ହୋଇଅଛି । ସେ ଲେଖିଛନ୍ତି :—

"ସକାଳରୁ ସଞ୍ଜେ ତୁମରି ଲଗି ମୁଁ ଅନାଇ ବସିଛି ପଥେ ।

× × × ×

ସାରା ପରାଣଟା ତୃଷାରେ ପୁରି,
ସାରା ମରମଟା ହେଉଛି ଝୁରି

ଶିରେ ଶିରେ ଚମକେ ବିଜୁଳି
ଛଳିଲ ଛଳିଲ ଦିଶି;
ଝିମି ଝିମି ଦେହ ଶୋଷାଏ ମୋହର
ଅବିଶ୍ୱାସ ସେଠେ ଭିଶି ।
ତୃଷ୍ଣାକୁ ତୃଷ୍ଣାକୁ କାନ୍ଦ ବରଷେ ମାନେ
ଜୀବନ ରହିବ ସତେ;
ଏତେ ଦୁଃଖ ଯଦି ଦେବ ! ଭଲ ଥିଲ
ବେଳୁ ନ କହିଲ ମୋତେ ।"

× × × ×

ପୁଣି କହୁଛନ୍ତି :—'ଗୃହେ ନାହିଁ ନାଥ ! ମାନ ଗଉରବ,
ଗୃହେ ନାହିଁ ସୁଖ ସମ୍ପଦ ଗରବ ।
ସବୁ ତ ହରିବ ତବ ଅନ୍ତରେ ଦିଅ ପ୍ରେମ ସୁଧା ନିର୍ଝର ।"

ବୈଷ୍ଣବ ଭାବ ଏହି କବିତାରେ ପ୍ରକଟିତ ହୋଇଛି । ଯେଉଁମାନେ ଭଗବାନଙ୍କ ସହିତ ଜୀବର ପ୍ରିୟା-ପ୍ରିୟତମର ରୂପକ କରି ଏହି ଅଲୌକିକ ପ୍ରେମଭାବକୁ ଯୌନାଶ୍ରିତ ଭାବର ରୂପ ଦେଇଛନ୍ତି, ସେମାନଙ୍କ ରୂପକର ବ୍ୟାଖ୍ୟା ବୈଷ୍ଣବ ଓ ଖ୍ରୀଷ୍ଟାନ୍ ମରମୀ ଭକ୍ତମାନେ ଓ ସୁଫୀ ଦାର୍ଶନିକମାନେ ନାନା ଭାବରେ ଲେଖିଛନ୍ତି । ଭାଗବତ-କାରଙ୍କ ମଧୁମୟ ରାସଲୀଳା, ବୈଷ୍ଣବ ଗୋସ୍ୱାମୀମାନଙ୍କ କାନ୍ତ ଓ ମର୍ମସ୍ପର୍ଶୀ ପଦାବଳୀ ଓ ଚୈତନ୍ୟଚରିତାମୃତ ଗ୍ରନ୍ଥ ମଧ୍ୟ ଏହିଭାବର ଆଧ୍ୟାତ୍ମିକ ବ୍ୟାଖ୍ୟା ଦେଇଛନ୍ତି । ତାହା ବଡ଼ ଗଭୀର । ସାଧାରଣର ବ୍ୟକ୍ତିଙ୍କ ପକ୍ଷରେ ତାହା ଅନନୁଧାବନୀୟ । ଭକ୍ତନିକଟରେ ଭଗବାନ୍ ଦୟିତ । ତାଙ୍କ ସହିତ ମିଳନ ଘଟିଲେ ଭକ୍ତ କୃତାର୍ଥ ହୁଏ । ସେ ଆନନ୍ଦ ଅକଥନୀୟ । ଜୀବରୂପିଣୀ ରାଧିକା ପରମାତ୍ମା ରୂପୀ ଶ୍ରୀକୃଷ୍ଣଙ୍କ ବିଷୟ ସଖୀଙ୍କୁ ବୁଝାଇ କହୁଛନ୍ତି :—

"କତ ମଧୁ ଯାମିନୀ  ରଭସେ ଗୋଆଁଇନୁ
ନା ବୁଝନୁ କୈଛନ କେଲି;
ଲାଖ ଲାଖ ଯୁଗ  ହିଏ ହିଏ ରାଖନୁ
ତବୁ ହିଆ ଜୁଡ଼ନ ନା" ଗେଲ (ଚଣ୍ଡୀଦାସ)

ଏହି ତୃଷା ଜୀବନର ନିତ୍ୟକାଳର ତୃଷା । ଏହି ଅନୁସନ୍ଧାନ ଜୀବର ସନାତନ ଧର୍ମ । ପ୍ରତ୍ୟେକ ଜୀବ ମଧ୍ୟରେ ଏହି ତୃଷ୍ଣା, ଏହି ସ୍ପୃହା ବିଦ୍ୟମାନ । ମନୁଷ୍ୟର ଜୀବନ ଯାକ ଏହି ପିପାସାର ନିବୃତ୍ତି ହୁଏ ନାହିଁ ବୋଲି ସେ ଜନ୍ମଜନ୍ମାନ୍ତର ଏହି ତୃଷ୍ଣା ଦୂର କରିବାକୁ ଆକୁଳ ହୋଇ ନିତ୍ୟ ଧାଉଁଛି । ସଂସାରର ସହସ୍ର ବାସନାକାମନାର ଇନ୍ଦ୍ରଜାଲ ତାକୁ ଅନ୍ଧ କରି ରଖିଥିବାରୁ ସେ ଏହାର ତଥ୍ୟ ପାଏ ନାହିଁ । ଏହି ନିତ୍ୟ ଅଶାନ୍ତି ଓ ଦ୍ୱନ୍ଦ୍ୱ ହେଉଛି ଜୀବାତ୍ମାର ପରମାତ୍ମାଙ୍କୁ ଅନ୍ୱେଷଣ କରିବା ପାଇଁ ପ୍ରଚେଷ୍ଟା । ଏହାକୁ ହିଁ ଜୀବରୂପିଣୀ ଗୋପୀଙ୍କର ଓ ରାଧାଙ୍କର ବିରହ ବୋଲି ଦାର୍ଶନିକମାନେ ବ୍ୟାଖ୍ୟା କରିଛନ୍ତି । ଏହାକୁହିଁ ଯୁରୋପୀୟ Mystic, (ରହସ୍ୟବାଦୀ) ମାନେ ଓ ଭାରତର ରସିକ ବୈଷ୍ଣବମାନେ ପ୍ରେମ ବା Love ଆଖ୍ୟା ଦେଇଛନ୍ତି । ଏହି ପ୍ରେମକୁ ଆଶ୍ରୟ କରି, ପ୍ରିୟା ଓ ପ୍ରିୟତମ; Bride ଓ Bridegroomଙ୍କ ପ୍ରେମଦ୍ୱାରା ରହସ୍ୟବାଦୀ ଭକ୍ତ ଓ ଦାର୍ଶନିକମାନେ ଭଗବତ୍ ପ୍ରେମାନୁରାଗକୁ ପ୍ରକାଶ କରିବାକୁ ଚେଷ୍ଟା କରିଅଛନ୍ତି କିନ୍ତୁ ଏଥିପାଇଁ ଭାଷା ପାଇ ନାହାନ୍ତି । ଭାବ ସେମାନଙ୍କର ସୀମାବଦ୍ଧ ହୋଇଯାଇଛି ବୋଲି ନରନାରୀଙ୍କ ପ୍ରେମ, ଅନୁରାଗ, ବିରହ ଓ ମିଳନ ଭାବକୁ କାନ୍ତ କମନୀୟ କବିତାରେ ଓ ଭାଷାରେ ଫୁଟାଇ ସେମାନେ ଶତ ଶତ ଗ୍ରନ୍ଥ ଲେଖିଛନ୍ତି । ଭଗବାନଙ୍କ ପ୍ରତି ଏହି ଅନୁରାଗମୟୀ ଭାବନାର ସର୍ବୋଚ୍ଚ ଉଦାହରଣ

ପ୍ରେମ କହନ୍ତି । ଖ୍ରୀଷ୍ଟାନ୍ ମିଷ୍ଟିକ୍ (ରହସ୍ୟବାଦୀ) ମାନେ ଯାହାକୁ First flame of love (ପ୍ରେମର ପ୍ରଥମ ଶିଖା) କହନ୍ତି, ଆମର ମୈଥିଳୀ ବୈଷ୍ଣବ କବି ଚଣ୍ଡୀଦାସ ସେହି ପୂର୍ବରାଗ ସମ୍ବନ୍ଧରେ ଜୀବାତ୍ମାରୂପିଣୀ ରାଧିକାଙ୍କ ମୁହଁରେ କୁହାଇଅଛନ୍ତି :—

"ପହିଲହି ରାଗ ନୟନ ରଙ୍ଗ ଭେଲ
ଯମୁନାର ଜଳେ ଯାଇତେ ସଜନୀ !
କାଳରୂପ ଦେଖିଯାନ୍ତି ।
ସବେ ଦୁଟି ଆଁଖି ଦିଆଛେ ବିଧାତା
ରୂପ ନିରଖିବ କି ?"

କୁନ୍ତଳାକୁମାରୀଙ୍କ ଭକ୍ତି-କବିତାରେ ଏହିପରି ଭାବ ପୂର୍ଣ୍ଣମାତ୍ରାରେ ରହିଛି । ତାହା ବାସ୍ତବିକ ଅଧ୍ୟୟନ ଓ ଚର୍ଚ୍ଚାର ଅପେକ୍ଷା ରଖେ । ଭଗବାନ ତାଙ୍କ ପାଖରେ ଅତି ମାଧୁର୍ଯ୍ୟମୟ Lord of love (ପ୍ରେମର ପ୍ରଭୁ)ର ପ୍ରତୀକ । Emerson (ଇମର୍ ସନ୍)ଙ୍କ ଭାଷାରେ God is essence of love (ଈଶ୍ୱର ପ୍ରେମର ସାରବସ୍ତୁ) କୁନ୍ତଳାଙ୍କ ଭକ୍ତିକବିତାକୁ ମଧ୍ୟ ଆଶ୍ରୟ କରିଅଛି । ଭଗବାନ୍‌ଙ୍କ ବିରହ ଆମ ନାରୀକବିଙ୍କ ପକ୍ଷରେ A profound emptiness (ମହାଶୂନ୍ୟତା), A period of destitution (ନିରାଶ୍ରୟତାର ବେଳ); ତାଙ୍କ ପ୍ରାଣ ରିକ୍ତ ଓ ଶୂନ୍ୟ । କୁନ୍ତଳା-କୁମାରୀଙ୍କର ଭକ୍ତପ୍ରାଣର ବିରହ ଭାବ କରୁଣ:—

"ଧୂଳିମୁଠା ଯେମନ୍ତ ଥିଲି କି ହେ ଗତି ?
କାହିଁ ଫୁଟାଇଲ ହୃଦ କୁନ୍ଦକଳୀ ?
ଝଡ଼ିଲି ଅକାଳେ ସଡ଼ିଲି ଜଞ୍ଜାଳେ
ଧୂଳିରେ ତ ହେଲି ବିଲୀନ ।"

ଅଭିମାନିନୀ ସେବିକା ଅମ୍ପୃଧିକ୍କାର କରି ପ୍ରଭୁଙ୍କୁ କହୁଛନ୍ତି:—

"ତୁମ ଦାସଦଳେ ମୁଁ ସବୁଠୁଁ ଊଣା,
ତେଣୁ କି ବାଞ୍ଛିତ ! ନ ହେଲ କରୁଣା ?
ଅସିଥିଲ ମନେ ଦେଇ ଯା ଫୁରୁଣା
(ଏବେ) କାରଣେ ନେଉଛି ଗୁଳିବ ।
ଥାଉ ଥାଉ ତବ ପ୍ରେମିକ ପଣିଆ
ମୁଁ ଥିବ ସଂସାର ଜଞ୍ଜାଳ ଅଳିଆ;
ମୋ ନୀଚପଣରେ ଥିବ ମଜନରେ
(ତହିଁ) ଜୀବନ ସଫଳ ମଣିବ ।"

ପୁଣି:—"ସହି ନ ପାରିଲି ଆଉ ଏ ଯାତନା,
ଧାଇଁଲି ତୋ ପାଶେ ଆକୁଳେ ଉନ୍ମନା
ଏବେ ଯା ବହୁତ କଲୁ ତୁ ଦମ୍ଭିଳି
କହିବ ମଉନେ ମରଣ—ଅଛି'ନା।"

ମାଡ଼ାମ୍ ଗୟ୍ୟାନ୍‌ଙ୍କ ଭାଷାରେ:—

"Thou didst begin, Oh my God ! to withdraw Thyself from me; and the pain of the absence was the more bitter to me, because Thy presence had been so sweet to me, Thy love so strong in me."

ସେଣ୍ଟ୍ ଜନ୍‌କସ୍‌ଙ୍କ ଭାଷାରେ:—

" I will draw near to Thee in silence, and will uncover Thy feet, that it may please Thee to unite me to Thyself, making my Soul Thy bride I will rejoice in nothing till I am in Thine arms"

ଏହି ଭାବ କୁନ୍ତଳାଙ୍କ ଅଞ୍ଜଳିର ଓ ଅର୍ଚ୍ଚନାର ସାରକଥା ।

ମୁକ୍ତାତ୍ମା ସେଣ୍ଟ ଟେରେସା ଏହି ଭାବରେ ତାଙ୍କ ଅନୁଭବର ବର୍ଣ୍ଣନା କରିଛନ୍ତି । ଏହି ଭାବକୁ ମଧ୍ୟ କୁନ୍ତଳାକୁମାରୀ ଦେବୀ ତାଙ୍କ ଭକ୍ତିକବିତାରେ ସୃଷ୍ଟି ଦେଇଛନ୍ତି । ଭକ୍ତିମତୀ ଟେରେସା ଉଦ୍‌ବେଳିତଚିତ୍ତରେ କହନ୍ତି:—

The pain grows to such a degree of intensity that in spite of oneself one cries aloud. Moreover, the intense and painful concentration upon the Divine Absence, which takes place in this dark rapture, induces all the psycho physical marks of ecstacy. Although this ecstacy lasts but a short time, the bones of the body seem to become disjointed by it, the pulse is as feeble as if one were at the point of death, She burns with a consuming thirst and can not drink at the well which she desires. She is no longer the mistress of reason.

କୁନ୍ତଳାକୁମାରୀ ବୈଷ୍ଣବ ମହାଜନମାନଙ୍କ ଭଳି ତାଙ୍କ "ଅର୍ଚ୍ଚନା"ରେ ଓ 'ଅଞ୍ଜଳି'ରେ ଭକ୍ତିର 'ମହାଭାବ' ପ୍ରକାଶ କରିଛନ୍ତି ନାନା ଭାବରେ-ନାନା ଢଙ୍ଗରେ । ତହିଁରେ କାନ୍ତାଭାବ ( ଯାହାକୁ ଖ୍ରୀଷ୍ଟୀୟାନଙ୍କର ପ୍ରତୀକ କହିଥାଉଛନ୍ତି ତାହା ) ନିଦର୍ଶିତ । The soul thirsting for God ( ଈଶ୍ୱରଙ୍କ ପାଇଁ ଆତ୍ମା ପିପାସୁ ) । ଅବଶ୍ୟ ଏହା ବୈଷ୍ଣବ ମହାଜନଙ୍କ ଭଳି ତାଙ୍କର ପ୍ରତ୍ୟେକ ଭକ୍ତି କବିତାରେ ନାହିଁ; ତଥାପି ଯେତିକ ଅଛି, ତାହା ପ୍ରାଚୀନ କବି ବୃନ୍ଦାବତୀ

ଦାସୀଙ୍କ ଲେଖା ଛାଡିଦେଲେ ଆଉ କେଉଁ ନାରୀ କବିଙ୍କ ପ୍ରତିଭାପ୍ରସୂତ ଲେଖାରେ ଦେଖାଯାଇ ନାହିଁ । ଚୈତନ୍ୟ ଚରିତାମୃତକାର କବିରାଜ ଗୋସ୍ୱାମୀ ଏହି ମହାଭାବର ସଂଜ୍ଞା (definition) ଦେଇ-ଅଛନ୍ତି:—

"ହ୍ଲାଦିନୀ ସାର ପ୍ରେମ, ପ୍ରେମ ସାର ଭାବ,
ଭାବେର ପରାକାଷ୍ଠା ନାମ ମହାଭାବ"
ଉଜ୍ଜଳଭାରତୀଙ୍କର ରସ ପ୍ରବଣତା:—

ଶ୍ରୀକୃଷ୍ଣଙ୍କ ମୁରଲୀ ନାଦରେ ହୃଦୟର ଅନ୍ତରତମ ଦ୍ରବଭାବର ରୁପକ କବି ବାଇରନ୍ (Byron)ଙ୍କ ଡନ୍‌ଜୁଆନ୍‌ରେ(Don Juan) ଲିଖିତ ଅଛି:—

"Love was born with them,
In them so intense,
It was their very spirit
not a sense.

ବାସ୍ତବିକ କବିତାରେ କୁନ୍ତଳା ପ୍ରେମ-ଭକ୍ତିର sense ବା ଭାବକୁ ଯେ କେବଳ ଦେଖାଇଛନ୍ତି, ତାହା ନୁହେଁ; ସତେ ଯେପରି ତାଙ୍କ ଆତ୍ମାର ସ୍ୱର ପ୍ରେମଭକ୍ତିର ତନ୍ତ୍ରୀରେ ଧ୍ୱନିତ ହୋଇଛି, ଏହାହିଁ ତାଙ୍କର ବହୁ କବିତାରୁ ଜଣାପଡ଼େ ଓ ପାଠକଙ୍କୁ ତନ୍ମୟ କରିଦିଏ ଏବଂ ତାଙ୍କ କବିତା ଭିତରେ ଯେଉଁ Divine discontent (ସ୍ୱର୍ଗୀୟ ଅତୃପ୍ତି ) ରହିଛି, ତାହାର ସ୍ୱାଦ ବଡ଼ ମଧୁର, କରୁଣ ଓ ମର୍ମସ୍ପର୍ଶୀ ଜଣାଯାଏ । ଭକ୍ତିମତୀ ମୀରାବାଈଙ୍କ ଭାଷାରେ:—

"ତାତ ମାତ ଭାଇବନ୍ଧୁ ଆପନା ନା କୋଇ
ସନ୍ତନ ଠିଗ୍ ବୈଠି ବୈଠି ଲୋକଲାଜ ଖୋଇ ।"

ଏହି ରୂପକ ହେଲା କୁନ୍ତଳାଙ୍କ ଭକ୍ତିଭାବର ମୂଳଦୁଆ । କୁନ୍ତଳାଙ୍କ ଅର୍ଚ୍ଚନା ବହିରେ ଥିବା ଗୀତଗୁଡ଼ିକ ପଢ଼ିଲେ ମନରେ ଏକ ଅପୂର୍ବ ଉତ୍ସାହ ଜାତ ହୁଏ । ବିଶ୍ୱସ୍ରଷ୍ଟା ଭଗବାନଙ୍କୁ ଦରିଦ୍ର-ନାରାୟଣ ରୂପେ ଦେଖିବା ସୌଭାଗ୍ୟ ପୃଥିବୀରେ ଖୁବ୍ କମ୍ ଲୋକଙ୍କର ହୋଇଛି । କୁନ୍ତଳା ପ୍ରାଣର ଆବେଗରେ ଗାଇଅଛନ୍ତି :—

"ଖୋଜି ବୁଲ କିମ୍ପା ଶାସ୍ତ୍ରପଦ । ମୁଁ ପର ଦୁଆରେ ଡାକୁଛି ।
"କିମ୍ପା ଅନାହାରରେ ତପୁଛ ଅରଣ୍ୟେ ? ମୁଁ ପର ଉପାସୀ ବୁଲୁଛି ।"

ଦୀନ ସଦନେ ମୁଁ ଜଠର ଜ୍ୱାଳା,
ବିଧବା ଲୋଚନେ ଲୋତକମାଳା,
ଅନାଥ ବେଶେ ମୁଁ ଶୁଏଁ ତରୁତଳେ,
ନିଁ ତଳେ କପର ବସୁଛ ?
ତଳେ ତୋର ଲଜ୍ଜା ନାହିଁ କି ? ରକତ ।
ଶୀତେ ଥରେ ତନୁ ଶୁଖେ ମୋ ଉକତ,
'ହା ଅନ୍ନ ! ଅନ୍ନ' ନ ଶୁଭେ କି ସ୍ୱନ ?
ମୋ କଥା କାହିଁରେ ଖୋଜୁଛ ?
ସଜାଡ଼ୁଛ କିମ୍ପା ଏ ସଜ କୁସୁମ ?
ଶିଳାରେ ଘଷୁଛ ସୁବାସ ଚନ୍ଦନ !
ସୁନାଦୀପ ଜାଳି, ଥୋଇ ଅର୍ଘ୍ୟଥାଳୀ
କହ କେଉଁ ଦେବେ ବନ୍ଦୁଛ ?
ପଦାରେ ବୁଲେ ମୁଁ ପିନ୍ଧି ଛିଣ୍ଡା କନ୍ଥା ।
କେବେ କି ଭୁଲେ ତୁ ଗୃହିଁଛୁ ?"

ଜଗତର ନଗ୍ନ ବୁଭୁକ୍ଷୁ, ଆଶ୍ରୟହୀନ, ବୃକ୍ଷତଳଶାୟୀ ଅନାଥ ନିଃସ୍ୱ ନରନାରୀଙ୍କଠାରେ ଯେ ଭଗବାନଙ୍କର ସତ୍ତା ଉପଲବ୍ଧ

କରେ ସେହି ପ୍ରକୃତ ଭକ୍ତ, ପ୍ରକୃତ ସାଧକ। ପରଦୁଃଖ ଦେଖି ଯାହା ନୟନରୁ ଅଶ୍ରୁ ବିଗଳିତ ନ ହୋଇଛି, ସେ କି ସାଧକ, ସେ କି ଭକ୍ତ ? କିନ୍ତୁ ସେ ଭକ୍ତିରେ ସନ୍ନ୍ୟାସୀଙ୍କର ଭକ୍ତି ବା ମୁକ୍ତିକାମନା ନାହିଁ ; ତାହା ପ୍ରତ୍ୟେକ ଜୀବର ସାଧାରଣ କାମ୍ୟ ବସ୍ତୁ । ବନ୍ଧନ ଭିତରେ କୁନ୍ତଳା ମୁକ୍ତିର ବାଣୀ ଶୁଣାଇଛନ୍ତି ଭକ୍ତକୁ :—

"କହ ରେ ସାଧକ ! ମାଗୁ କି ମୁକତି,
ବିଶ୍ୱ ବନ୍ଧନେ ତୋ ବନ୍ଧା ମୋ ଶକତି
କିମ୍ପା ତୋ ଆରତି ? କି ହେବ ବିଭୂତି ?
ଦିନେ କି କା ଦୁଃଖ ଦେଖିଛୁ ?
ଦିନେ ପର ପାଇଁ ନୟନରୁ ତୋର
ତପ୍ତ ଅଶ୍ରୁରାଶି ଢାଳିଛୁ ?"

ରବୀନ୍ଦ୍ରନାଥଙ୍କର "ବୈରାଗ୍ୟ ସାଧନେ ମୁକ୍ତି-ସେ ଆମାର ନୟ। ଅସଂଖ୍ୟ ବନ୍ଧନ ମାଝେ ଲଭିବ ମୁକ୍ତିର ସ୍ୱାଦ" ଏହି ଭାବର ଦ୍ୟୋତକ । କର୍ମରେ ଓ ସେବାରେ ହିଁ ସାଧକର ଭଗବଦ୍‌ଭକ୍ତି ଏବଂ ସେବାପ୍ରକାଶର ଭଙ୍ଗୀ କୁନ୍ତଳାଙ୍କର ଏହି କବିତାରେ ଫୁଟିଛି । ପରର ଦୁଃଖରେ ପ୍ରାଣର ବାସ୍ତବ ଆର୍ଦ୍ରୀଭାବହିଁ ପ୍ରକୃତ ଭକ୍ତି-ସାଧନ ।

## ପ୍ରେମିକା କବି କୁନ୍ତଳାକୁମାରୀ—

'ପ୍ରେମଚିନ୍ତାମଣି' କୁନ୍ତଳାକୁମାରୀଙ୍କର ଶେଷ ପ୍ରକାଶିତ କବିତାଗ୍ରନ୍ଥ ନୁହେଁ । ଏହାଛଡ଼ା 'ଓଡ଼ିଆଣୀର କାନ୍ଦଣା' ମଧ୍ୟ ତାଙ୍କର ପରିଣତ ବୟସର ରଚନା । ସେହି କବିତାରେ ଓଡ଼ିଆଝିଅ କୁନ୍ତଳାଙ୍କର ବିଦେଶରେ ଓଡ଼ିଆଙ୍କର ଦୁଃଖ ଓ ଓଡ଼ିଆଣୀଙ୍କର

ସ୍ୱଦେଶରେ ଓ ବିଦେଶରେ ବିଡ଼ମ୍ବନାମୟ ଲକ୍ଷିତ ଜୀବନର କରୁଣ କାହାଣୀ ବର୍ଣ୍ଣିତ ହୋଇଅଛି । କବିତା ଯେଉଁଥି ପାଇଁ ହୁଏ; ସେହି କାବ୍ୟଟିରେ ତାହା ସାର୍ଥକ ହୋଇ ନାହିଁ । କେବଳ ରୀତିସାହିତ୍ୟ ପ୍ରତି ସାଧାରଣ ଲୋକ ଶିକ୍ଷିତ ଓ ଅଶିକ୍ଷିତ ଉଭୟଙ୍କର ଗୋଟାଏ ମମତା ଥିବାରୁ କବିଙ୍କର ବକ୍ତବ୍ୟ ଓ ସନ୍ଦେଶର ସମାଧାନ ସେ ବଚେଇଛନ୍ତି ଗୀତରେ । କବିତା ଯେଉଁଠି କେବଳ ନବୀନ ଭାବର ଜ୍ୱାଳାକୁହିଁ ଅଭିବ୍ୟକ୍ତ କରିଦିଏ, ସେଠାରେ କବିତାର ସ୍ୱଚ୍ଛବର ମାଧୁର୍ଯ୍ୟ ପୂର୍ଣ୍ଣ ହୁଏ ବୋଲି ସେହି କବିତା ଉଚ୍ଚଶ୍ରେଣୀୟ ହୋଇ-ପାରେ ନାହିଁ । ଏହାକୁ ଗଦ୍ୟ କବିତା କହିଲେ ଠିକ୍ ହେବ ।

କିନ୍ତୁ ପ୍ରେମଚିନ୍ତାମଣିର କଥା ଭିନ୍ନ । ଏହି କାବ୍ୟଟିରେ କବିଙ୍କର ଯୁବମନୋଭାବ ପୂର୍ଣ୍ଣଭାବରେ ବିକଶିତ ହୋଇଛି । ଜୀବନର ହତାଶ, ଅଶ୍ରୁ, ଆନନ୍ଦ, ପ୍ରଣୟ, ଅଭିସାର, ମାନ, ଅପମାନ, ଅଭିମାନ, ଆଦି ସମସ୍ତ କମନୀୟ କାନ୍ତଭାବକୁ କୋମଳ ନାଟକୀୟ ମାଳା ଦେଇଛନ୍ତି । ଏଥିପାଇଁ ତାହାଙ୍କର ବ୍ୟକ୍ତିତ୍ୱର ବାସ୍ତବିକ ସନ୍ଧାନ ନ କରି ରହିହୁଏ ନାହିଁ । ଯେଉଁଠି ଅଭିବଲ୍ଲଭ ମହାନ୍ତି ପ୍ରଫେସରଙ୍କ ମୁଖବନ୍ଧଟିକୁ ପ୍ରତିବାଦ କରି ସେ 'ନିଜ କଥା' ରେ ଲେଖିଛନ୍ତି:- ପ୍ରେମଚିନ୍ତାମଣିର ଶ୍ରୀକୃଷ୍ଣ, ରାଧିକା, ସଖା, ସଖୀ ଇତ୍ୟାଦି ନାୟକ ନାୟିକାଙ୍କୁ ଅବଲମ୍ବନ କରି, ବୈଷ୍ଣବ କବିମାନଙ୍କ ପଦାଙ୍କ ଅନୁସରଣ କରି ତାଙ୍କର କବିତା ରଚିତ ହୋଇ ନାହିଁ ।" ବୋଧ ହୁଏ ଏହା ହୋଇଛି ତାଙ୍କ ନିଜର ପ୍ରାଣର ଅନ୍ତଃସ୍ଥଳୀ ଭାବଧାରାର ଅନୁମୋଦନ । ସେ ନିଜେ ଯେଉଁଠି ନାୟିକା ଭାବରେ ତାଙ୍କର କବି ବାୟୀଙ୍କୁ ନିଜର ପ୍ରଣୟବାର୍ତ୍ତାର ଭାବବିହ୍ୱଳ ନିବେଦନ କରିଅଛନ୍ତି ଏବଂ ତାଙ୍କ ମାନସନାୟକଙ୍କ ପ୍ରତ୍ୟକ୍ଷ ଭାବକୁ ନିଜର ହୃଦାନ୍ତରିକତାରେ

ଚରିତ୍ର ବର୍ଣ୍ଣବିନ୍ୟାସ ଦେଇଛନ୍ତି, ସେହି କଥା ସେ ଅତ୍ୟନ୍ତ ଅସାଧାରଣ ସାହସିକତା ସହକାରେ ବ୍ୟକ୍ତ କରିଛନ୍ତି ବୋଲି ସୁଧୀ ଜନମାତ୍ର ତାଙ୍କୁ ଚିରଦିନ ସମ୍ମାନ କରିବେ । ତାଙ୍କର ସ୍ୱାତନ୍ତ୍ର୍ୟ ଭାବ, ସ୍ୱାତନ୍ତ୍ର୍ୟ ଚିନ୍ତା, ତାଙ୍କର ବ୍ୟକ୍ତିତ୍ୱ ପ୍ରେମଚିନ୍ତାମଣିକୁ କେବଳ ନୁହେଁ, ତାଙ୍କର ସମଗ୍ର ସାହିତ୍ୟସାଧନାକୁ ଅଶ୍ରୟ କରି କ୍ରମବର୍ଦ୍ଧନ-ଶୀଳ ଭାବରେ ଗତି କରନ୍ତି । ଯେଉଁମାନେ ତାଙ୍କର ସାହିତ୍ୟକୁ ପାରମ୍ପରିକ ରୀତି ଅନୁସାରେ ପାଠ କରିବାର ସୁବିଧା ପାଇଛନ୍ତି, ଏହି କଥା ସେମାନେହିଁ ଅନୁଭବ କରିବେ ।

ପ୍ରେମଚିନ୍ତାମଣିରେ ଉତ୍କଳଭାରତୀ ତାଙ୍କର ଇଚ୍ଛା ବିରୁଦ୍ଧରେ ବନ୍ଧୁଙ୍କ ଅନୁରୋଧରୁ ଶ୍ରୀକୃଷ୍ଣ ଶ୍ରୀମତୀଙ୍କୁ ନାୟକନାୟିକା ରୂପେ ଉପସ୍ଥାପିତ କରି ଯେଉଁ କବିତାକୁଞ୍ଜ ରଚିଛନ୍ତି, ତାହା ପାଠକଲେ ଆମ୍ଭମାନଙ୍କ ଦୃଷ୍ଟି ଉତ୍କଳର ପ୍ରାଚୀନ କବିମାନଙ୍କର ରଚନାବଳୀ ପ୍ରତି ଆକୃଷ୍ଟ ହୁଏ । ପ୍ରେମଚିନ୍ତାମଣିର କବିତାଗୁଡ଼ିକ କବିସୂର୍ଯ୍ୟ, ଗୋପାଳକୃଷ୍ଣ, ଅଭିମନ୍ୟୁ, ସଦାନନ୍ଦ ପ୍ରଭୃତିଙ୍କ କବିତା ପରି ଗଭୀର ଓ ଆନନ୍ଦଦାୟକ ନ ହେଲେହେଁ ପ୍ରେମ ସମ୍ବନ୍ଧରେ ଆଧୁନିକ ଗୀତ, କବିତା ଓ ଗଦ୍ୟକବିତା ପ୍ରଭୃତିସାଧାରଣ କବିତାଠାରୁ ସେଗୁଡ଼ିକର ଆସନ ଯେ ବହୁତ ଉଚ୍ଚ, ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ଯୁଗରେ ରାଧାକୃଷ୍ଣଙ୍କୁ ନାୟିକାନାୟକ କରି କବିତା ଲେଖିବା ବିଳାସ ତରୁଣ କବିମାନଙ୍କର ଆଦୌ ନାହିଁ କହିଲେ ଚଳେ । କିନ୍ତୁ କୁନ୍ତଳାକୁମାରୀଙ୍କର ଅନେକ ଅଭାବ ଅସୁବିଧା ସତ୍ତ୍ୱେ ଏ ଦିଗରେ ଲେଖନୀ ଚାଳନା କରିଥିବା ଅବଶ୍ୟ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ।

କୁନ୍ତଳାକୁମାରୀଙ୍କ ପ୍ରେମଚିନ୍ତାମଣିର ନାୟିକା ଶ୍ରୀମତୀଙ୍କର ପ୍ରେମମୟ ଜୀବନରେ ପୂର୍ବରାଗର ଛାୟା ବିଶେଷ ପରିମାଣରେ ପଡ-

ନାହିଁ । ବୈଷ୍ଣବ କବିମାନେ ନିଜର ଅନୁରୂପ ପୂର୍ବାନୁଭବରେ ବିସ୍ତୃତ ବର୍ଣ୍ଣନା କରିଥାନ୍ତି । ବାସ୍ତବିକ କହିବାକୁ ଗଲେ ପୂର୍ବରାଗ-ଜନିତ ଆନନ୍ଦ ଉଦ୍‌ବେଗରେ ବଞ୍ଚିରହିବା ପାଇଁ ବୈଷ୍ଣବ କବି-ମାନଙ୍କ ରଚିତ ଗ୍ରନ୍ଥ ବିଶେଷ ଭାବରେ ଚେଷ୍ଟିତ ଥିବାର ପରିଲକ୍ଷିତ ହୁଏ । ପୂର୍ବରାଗ ବିନା ବୈଷ୍ଣବ ସାହିତ୍ୟରେ ପ୍ରେମମାଧୁରୀ ଆସ୍ୱାଦନ କରିବା ସମ୍ଭବପର ନୁହେଁ । ହଠାତ୍ ଅତର୍କିତ ଭାବରେ ଦୁଇଟି ଅଜଣା ଅଚିହ୍ନା ପ୍ରାଣୀଙ୍କ ଚକ୍ଷୁର ମିଳନ ହୋଇପାରେ, ତଜ୍ଜନିତ ପ୍ରେମ ମନ୍ଦାକିନୀ ମଧ୍ୟ ବହିପାରେ; କିନ୍ତୁ ପୂର୍ବରାଗର ଲୀଳାମାଧୁରୀ-ସନ୍ଦର୍ଶନ କରିବା ବା ଅନୁଭବ ସୌଭାଗ୍ୟ ଏମାନଙ୍କର ନଥାଏ । ବାସ୍ତବ ସତ୍ୟ ଉପରେ ପ୍ରତିଷ୍ଠିତ ଜୀବନର ଧାର୍ମିକ ସାହିତ୍ୟ ଆଦର୍ଶକୁ ଯେଉଁମାନେ ଶୁଦ୍ଧ ଦୃଷ୍ଟିରେ ନଦେଖି କମ୍ପିତ କମାକାର ରାଧାକୃଷ୍ଣଲୀଳା ବର୍ଣ୍ଣନା କରନ୍ତି, ତାହାର ସୁଷମା, ତାର ମାଧୁରୀ ଅବା କେଉଁଠି ? କୈଶୋର ଅବସ୍ଥାରେ ନନ୍ଦନନ୍ଦନ ନବଘନଶ୍ୟାମଙ୍କ ରୂପର ମୋହନ ବର୍ଣ୍ଣନା ସଖୀମୁଖରୁ ଶୁଣି ଶ୍ରୀରାଧାଙ୍କର ହୃଦୟରେ ପ୍ରେମ ପ୍ରବାହିନୀ ରୂପ ଗ୍ରହଣ କଲା । ଯମୁନା କୂଳରେ ଲତାବିତାନରେ ମଧୁର ବଂଶୀସ୍ୱନ ଶୁଣିଲା ମାତ୍ରକେ ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀମତୀ ବିଶେଷ ଆକୃଷ୍ଟା ହୋଇପଡ଼ିଲେ । ନିତି ନିତି ଶ୍ରୀକୃଷ୍ଣଙ୍କ ସୌମ୍ୟ ମୂର୍ତ୍ତିର ବର୍ଣ୍ଣନା ଅନ୍ୟଠାରୁ ଶ୍ରବଣ କରି ରାଧାଙ୍କ ହୃଦୟରେ କୃଷ୍ଣ ରୂପ ଦର୍ଶନ ନିମିତ୍ତ ଯେଉଁ ବଳବତୀ ଆକାଂକ୍ଷା ଜାତ ହୋଇଥିଲା, ତାହା ବୈଷ୍ଣବ କବିମାନଙ୍କର କାନ୍ତପଦାବଳୀରେ ଗୋଟିଏ ସନାତନ ଭାବର ମୂର୍ତ୍ତି ଧାରଣ କରି ରହିଛି ।

ଅଶ୍ରୁପୂର୍ଣ୍ଣ ନୟନା ଶ୍ରୀମତୀ କୁସୁମବୃନ୍ତରୁ କୁସୁମ ଚୟନ କରି ସତୃଷ୍ଣ ନୟନରେ ତାହା ପ୍ରତି ନିରୀକ୍ଷଣ କରି ଜନ୍ମ ଜନ୍ମାନ୍ତରର

ବାସନାକୁ ମନେ ପକାଇ ଆକୁଳ ପ୍ରାଣରେ କହୁଛନ୍ତି—

"ହୃଦୟେ ଫୁଟିଛି ଏ ପ୍ରେମକଳୀ
ଅନ୍ଧାରେ ଆପେ ଶୁଖିବ ଝଡ଼ି
ମରମ ବେଦନା କିଏ ବୁଝିବ ଆଉ
ଯୌବନ ତାର ଯିବଟି ସରି ।"

କୁସୁମ କଳିକାର 'ମରମ ବେଦନା' ବୁଝିବା ପାଇଁ କେତେଜଣ ସମର୍ଥ ? କେତେ ଆଶା ଆକାଙ୍କ୍ଷା ହୃଦୟରେ ପୂର୍ଣ୍ଣ କରି ଜୀବନ-ତରୀ ସଂସାର ସରିତରେ ଭସାଇ ପ୍ରେମକଳିକା ତାର ଭବିଷ୍ୟତ ଜୀବନର ସ୍ୱପ୍ନ ଦେଖିବା ସ୍ଥଳେ—

"ଅନ୍ଧାରେ ଆପେ ଶୁଖିବ ଝଡ଼ି, ଶୁଖିବ ଝଡ଼ି;
ମରମ ବେଦନା କିଏ ବୁଝିବ ଆଉ ଯୌବନ ତାର ଯିବଟି ସରି ।

ଏହି ନୈରାଶ୍ୟଦାୟକ ହୃଦୟବିଦାରକ ସ୍ମରଣ ଜୀବନର ପ୍ରାକ୍ କାଳରେ ଶୁଭର ସୂଚନା ନୁହେଁ । ଶ୍ରୀମତୀଙ୍କର ଏହି ଆକୁଳତା, ଏହି ଆଶଙ୍କା ତାଙ୍କର ସମଗ୍ର ଜୀବନକୁ କିପରି ଭାବରେ ସ୍ପର୍ଶ କରିଛି, ତାହା ଦେଖିବାର ବିଷୟ ।

ଶ୍ରୀମତୀ ଆତୁର ନୟନରେ, ବିକଳକଣ୍ଠରେ ନିଜ ପ୍ରାଣପ୍ରିୟା ସଖୀ ଲଳିତାଙ୍କୁ ଚାହିଁ କହୁଛନ୍ତି—

"ସଖି ! ମୁଁ କି ତାରେ ଛାଡ଼ି ପାରେ ?
ଜୀବନାଡ଼ୀ ପଛେ ଛାଡ଼ିବ ହୃଦରୁ
ଜ୍ୟୋତି ଲିଭିଯିବ ବେନି ନୟନରୁ
ବୁଡ଼ିଯିବେ ଗ୍ରହ ଚନ୍ଦ୍ରମା ତପନ ଘୋର ଅନ୍ଧକାରେ ।"

ଶ୍ରୀମତୀଙ୍କ ହୃଦୟକୁ ସବୁବେଳେ ସନ୍ଦେହ ଆବୃତ କରିଥିଲା । ନନ୍ଦନନ୍ଦନ ବ୍ରଜରାଜ ଶ୍ରୀକୃଷ୍ଣଙ୍କୁ ସେ ପାଇବେ ବୋଲି ଆଶା, ବୋଧହୁଏ କରି ନ ଥିଲେ । ସେ କୁଳକାମିନୀ, ଶ୍ରୀକୃଷ୍ଣ ପରପୁରୁଷ । ତାଙ୍କ ସହିତ କୁଳବଧୂର ପ୍ରେମବନ୍ଧନ ସମାଜଦୃଷ୍ଟିରେ କଦର୍ଯ୍ୟ । ବଂଶର ସମ୍ମାନ ଜାତିର ମାନ ମର୍ଯ୍ୟାଦା ସବୁ କାଳେ କାଳିମା ଲଗି ସମଗ୍ର ଜୀବନକୁ କଳଙ୍କିତ କରିପାରେ, ଏହି ଆଶଙ୍କା ମଧ୍ୟ ତାଙ୍କର ଥିଲା । କିନ୍ତୁ ଏ ସବୁ ତ ନୈସର୍ଗିକ ବିଷୟ ନୁହେଁ । ପ୍ରେମପୂର୍ଣ୍ଣ ହୃଦୟ ଏସବୁକୁ ମାନେନାହିଁ । ଶ୍ରୀମତୀ ଏତେ ବାଧାବିଘ୍ନ ସତ୍ତ୍ୱେ ଶ୍ରୀକୃଷ୍ଣଙ୍କ-ପ୍ରତି ଏକାନ୍ତ ଅନୁରକ୍ତା ରହିବାରେ ଧୈର୍ଯ୍ୟ ହରାଇ ନାହାନ୍ତି ।

ପ୍ରେମ ପରିପୂର୍ଣ୍ଣ ହୃଦୟ ଅନେକ ସମୟରେ ସ୍ୱରୂପ ବିବେଚନା କରି ନ ଥାଏ । ମନସ୍ତତ୍ତ୍ୱବିଦ୍‌ମାନେ ଯାହା କହନ୍ତୁ ପଛକେ, ବାସ୍ତବ ଜୀବନରେ ତାହାର ଭୂରି ଭୂରି ପ୍ରମାଣ ଦେଖିବାକୁ ମିଳେ । ସଖୀମାନେ ବୋଧହୁଏ ପରିହାସ ଛଳରେ ରାଧାଙ୍କୁ କହିଥିବେ ଯେ, ଶ୍ରୀକୃଷ୍ଣ କାଳିଆ, ଅସୁନ୍ଦର; କିନ୍ତୁ ଶ୍ରୀମତୀଙ୍କ ମନ ଏଥିରେ କାଇଲ୍ ମାନିବାର ଜନ୍ତୁ ନୁହେଁ । ସେ ସୁନ୍ଦର ହୁଅନ୍ତୁ କି ଅସୁନ୍ଦର ହୁଅନ୍ତୁ, ଥରେ ଯେତେବେଳେ ତାଙ୍କୁ ଜୀବନ ବିକିଛନ୍ତି, ସେତେବେଳେ ସୃଷ୍ଟି ପ୍ରଳୟ ହେଲେ ସୁଦ୍ଧା ସେ ତାଙ୍କୁ ତ୍ୟାଗ କରିବେ ନାହିଁ ।

"ଆକାଶ ଅଙ୍ଗରୁ ଖସୁଲେ ! ନୀଳିମା,
ରକ୍ତ ତେଜୁ ରଙ୍ଗ ତାର,
ତା ପାଦେ ମୋ ଜୀବ, ସେ ପଦରାଜୀବ
ହେଉ ଜନ୍ମେ ଗଳାହାର ।"

ସେ ପଦରାଜୀବ ଧ୍ୟାନ କରି ଶ୍ରୀକୃଷ୍ଣଙ୍କୁ ଗଳାହାର କରି, ମଥାମଣି ସମର୍ପଣି ଜୀବନ ଅତିବାହିତ କରିବାକୁ ଶ୍ରୀମତୀ ବଦ୍ଧପରିକର ।

କୁରୂପ ବୋଲି କହି ତାଙ୍କୁ ଭୁଲାଇବାର ଆଶା ବିଡ଼ମ୍ବନା ମାତ୍ର । ଯଦି ଶ୍ରୀକୃଷ୍ଣ କୁରୂପ, ତା ହେଲେ ସ୍ୱରୂପ ଅବା କିଏ ? ସ୍ୱରୂପର ବା ମୂଲ୍ୟ କେଉଁଠାରେ ? ଏହି ସୁରୂପକୁ ସ୍ୱରୂପ ବୋଲି ସ୍ୱୀକାର କରି ଶ୍ରୀମତୀ ନିଜ କୁରୂପକୁ ହୀନ ପ୍ରତିପାଦିତ କରି ଧୈର୍ଯ୍ୟ ଧରି ରହି ପାରିବେ ତ ?

"କେ କହେ କାଳୁପ ସହି !
ତା ବିନା ସ୍ୱରୂପ କହୁ ଯାହାକୁ ଲୋ ! ଆଖି ମୋର ଦିଏ ଦହି ।"

ମୁଗ୍ଧା ନାୟିକାର ପ୍ରିୟ ଦର୍ଶନ ପରେ ହୃଦୟ ସାଗରରେ ଯେଉଁ ତରଙ୍ଗଭଙ୍ଗର ସୃଷ୍ଟି ହୁଏ ତାହା ବର୍ଣ୍ଣନା କରି ବୈଷ୍ଣବ କବିମାନେ ନିଜଂର ଅମର ଲେଖନୀକୁ ଧନ୍ୟ କରି ଯାଇଅଛନ୍ତି । ସଖୀର ଦୁଃଖ, ସଖୀର ବିରହ ସହି ସହି ପାରେ ନାଁ । ରାଧାଙ୍କ ବିରହ, ରାଧାଙ୍କ ଆକୁଳ ପ୍ରାଣ ଲଳିତା, ବିଶାଖା ଓ ବୃନ୍ଦାବତୀ ପ୍ରଭୃତିଙ୍କୁ ଆକୁଳ କରୁଥିଲା । ଅତେଥ ଆକୁଳତାରେ, ଅତେଥ ଆଶ୍ୱାସନା ଦେବା ଉଦ୍ଦେଶ୍ୟରେ ବୃନ୍ଦାବତୀ ଶ୍ରୀମତୀଙ୍କୁ ସମ୍ବୋଧନ କରି କହିଲେ —

"କାହିଁକି ରେ ଝୁରୁ ସହି ! ସେହି ସୁନ୍ଦର ଲଗି
ଦେଖାଠି କାନକା ତାରି ରୂପେ ଅଖି ରହିଛି ଜାଗି;
ପରେ ଦ ଘ ଜ ରେ ଧାଉଛି
ଯୋଧନେ ପ୍ରେମେ ସେ ଗୁହିଁଛି
ଦିବସେ ନିଶିରେ ଅଶ୍ରୁ ଝୁରୁଛି ସେହି ସୁନ୍ଦର ଲଗି
କାନ୍ତ କମଳ ସୌରଭେ ରୂପେ ପ୍ରେମ ରହିଛି ଜାଗି ।"

ପ୍ରେମଚିନ୍ତାମଣିର ନାୟିକା ଦିନେ ନୀରବରେ କଳଙ୍କୀକୁ ବସାଇ ଦେଇ ପୁଣି ତାକୁ ନିଜ ହୃଦୟବେଦୀରେ ବସାଇଲେ ।

ସେତିକିବେଳେ ତାଙ୍କ ମନର ଭାବ ଅଭିବ୍ୟକ୍ତ କରିବାକୁ ଯାଇ କବି ଲେଖୁଛନ୍ତି—

"ପଡ଼ି ଅଙ୍ଗେ ମମ ମିଳନ ପୀୟୂଷ
ଚେତନା ଗଲୁଁ ହଜିଲି
ଧନ୍ୟ ହୋଇଲା ଆତ୍ମା ଜୀବନ ଗୋଟାକ
କି ପୁଣ୍ୟ ଆନନ୍ଦେ ମଜ୍ଜିଲି !"

ଏ ଆନନ୍ଦରେ ବିଭୋର ହୋଇ ରକ୍ତମାଂସ ଶରୀରଧାରିଣୀ ନାୟିକା ତାଙ୍କ ଚିରବାଞ୍ଛିତ ନାୟକଙ୍କ ରୂପ ଦର୍ଶନରେ ବ୍ୟାକୁଳ ହୋଇଉଠିଲେ । ସେ ତାଙ୍କର ସମସ୍ତ ମାନସିକ ଶକ୍ତିକୁ ଏକ ସ୍ଥାନରେ ଠୁଳକରି ପ୍ରିୟଙ୍କ ଗୁଣାବଳୀ ମନ ମଧ୍ୟରେ ଚିନ୍ତା କରିବାକୁ ଲାଗିଲେ । ଏହି ଅବସ୍ଥାରେ ସେ କହୁଛନ୍ତି—

"କିମ୍ବା ଦୂର୍ବାଦଳ ଘନ ଶ୍ୟାମଳ
କାହିଁ ସ୍ମିତ ହାସ
ତା ପରଶେ ପ୍ରାଣ
ସେ ତ କୋମଳରୁ ବଳି କୋମଳ,
ତାହାର ମାଧୁରୀ କେ ପାରିବ କଳି,
ପରଶେ ପଥର ଯିବ ତା ତରଳି,
ଝଟକି ଭଳି ଚିତ୍ତ ଚଞ୍ଚଳ ।"

ନାୟକଙ୍କ ଗୁଣବର୍ଣ୍ଣନା କରୁଁ କରୁଁ ଯେତେବେଳେ ନାୟିକା ବିରହବେଦନା ଅନୁଭବ କରୁଥାନ୍ତି, ସେତେବେଳେ ଅନୁଭୂତ ଦୁଃଖର ବର୍ଣ୍ଣନା କରିବା ଶକ୍ତି ସବୁ କବିଙ୍କର ନ ଥାଏ । ସଖୀ ଜାତିମାଳା ରାଧାଙ୍କ ଦୁଃଖକୁ ଲକ୍ଷ୍ୟ କରି କାତର କଣ୍ଠରେ କହୁଛନ୍ତି:--

"କେତେ ଯୁ ଅନାଇ ବସୁ ଅକାଳରେ ଆଖି
ଏ ଅନ୍ଧାର ତାରା ଚନ୍ଦ୍ର, ଏ ଶର୍ବରୀ ସାକ୍ଷୀ,
ଗତ ଶରତ ଗଲଣି ବିଫଳ
ବିଗତ ଶତ ବସନ୍ତ କୋକିଳ କାକଳି
କୋଟି ପ୍ରାବୃଟ ଦାମିନୀ ମେଘରେ
ଲୁଚିଲେ ଦେଖାଇ ଝଲି
ବସିଛୁ ଏକା ନାଳମାଖି
ନୟନର ଲୁହ ନୟନ କୋଣରେ ସଖି—
ସେ ଗଲଣି ଲୁଖି ।"

ବିଦେଶରେ କାନ୍ତଙ୍କ ଅବସ୍ଥିତିକୁ ସ୍ମରଣ କରି ପ୍ରୋଷିତ-ଭର୍ତ୍ତୃକା ନାୟିକାଙ୍କ ବିଳାପ ଓଡ଼ିଆ ସାହିତ୍ୟକୁ ଅମର କରି ରଖିଛି । ଶ୍ରୀ ଚକ୍ରପାଣି ଛେନାୟକ ଥରେ ଲେଖିଥିଲେ—

"ସଖି ! ଯେନ ଶ୍ୟାମ ଲାଗି ଗଲଣି ଜୀବନ
ନନ୍ଦନନ୍ଦନ ଆନନ ଲୋକନ ଇଚ୍ଛେ ନୟନ
କର୍ଣ୍ଣ ଲୋଡ଼େ ବଂଶୀଧ୍ୱନି ନ ରୁଚଇ ଚଯ ଅଶନ
ପ୍ରାଣନାଥଙ୍କୁ ନ ଦେଖି ପ୍ରାଣ ନ ପାରିବ ରଖି,
କାହିଁ କାହିଁ କେହି ମୋ ସମାନ ।
ଶ୍ରୀଚନ୍ଦ୍ରମୁଖ ନ ଚାହିଁ          ଚିତ୍ତ ହୋଇଅଛି ଦହି
ଶୁଣ ଅରେ ପ୍ରାଣ ସହି ! କାହିଁ ଗଲେ, ଦେଖାଅ ବଦନ ।"
ଇତ୍ୟାଦି ।

ମହାରାଜ ଶ୍ରୀ ବୀରକିଶୋର ଦେବ ଶ୍ରୀ ରାଧିକାଙ୍କ ବିରହ ଲକ୍ଷ୍ୟ କରି ସୁନ୍ଦର କବିତା ରଚିଛନ୍ତି । ତାଙ୍କୁ ଶ୍ରୀମତୀ ବଡ଼ ଆକୁଳ କଣ୍ଠରେ

କହିଛନ୍ତି—ସେ ଜାଣିଜାଣି ତ କୌଣସି ଦୋଷ କରି ନାହାନ୍ତି, ତାଙ୍କୁ ଶ୍ରୀକୃଷ୍ଣ ନିରସ କାହିଁ କଲେ ?

"ଶ୍ୟାମ ବିନେ ସଜନୀ ଆନେ ବଞ୍ଚିବି କି ?
ମୁଁ ତ କରିନାହିଁ ଦୋଷ କାହିଁକି ମୋରେ ନିରସ ?
କରିଥିଲି କେତେ ଆଶ ଦହିଲେ କି ?"

କୁନ୍ତଳାକୁମାରୀ ତାଙ୍କ ପ୍ରେମଚିନ୍ତାମଣିରେ ଏହି ଭାବର କବିତା ବହୁତ ଲେଖି ନ ଥିଲେହେଁ ସ୍ଥଳ ବିଶେଷରେ ସୂଚନାଦ୍ୱାରା ଏହି-ଭାବକୁ ଜଣାଇଛନ୍ତି । ମାନବଜୀବନର ଏହି ଅଂଶ ବିଶେଷ ପ୍ରତି କୁନ୍ତଳାକୁମାରୀଙ୍କର ବିଶେଷ ଦୃଷ୍ଟି ପଡ଼ି ନାହିଁ । ଅନେକଙ୍କର ମତ ଯେ, କବିଙ୍କ ଜୀବନର ଛାୟା ତାଙ୍କ କାବ୍ୟକବିତାରେ, ଲେଖାବଳୀରେ ପ୍ରତିଫଳିତ ହୋଇଥାଏ । ସେହି ହେତୁ କେହି କେହି ସାହିତ୍ୟିକ ଅବଦାନରୁ ତତ୍‌ସ୍ରଷ୍ଟାଙ୍କ ଜୀବନ ସମ୍ବନ୍ଧରେ କେତେକ ଧାରଣା କରି ନିଅନ୍ତି । କୁନ୍ତଳାଙ୍କ ଜୀବନରେ ବିରହର ଛାୟା ବୋଧହୁଏ ପଡ଼ି ନ ଥିଲା । ସେ ହେତୁ ବିରହୀ ଯକ୍ଷର ଅନୁଭୂତ ବେଦନା ବୋଧହୁଏ ସେ ଅନୁଭବ କରି ନାହାନ୍ତି ।

ନବୀନଯୌବନା ଶ୍ରୀମତୀଙ୍କର ଦିନେ ସୌଭାଗ୍ୟବଶତଃ ହଠାତ୍ ଶ୍ରୀକୃଷ୍ଣଙ୍କ ସହିତ ଦେଖାହେଲା । ସେହି ଘଟନାକୁ ବର୍ଣ୍ଣନା କରି କୁନ୍ତଳା ଲେଖିଛନ୍ତି—

"ଆହା ! ସେ ଦିନ କି ଭୁଲିବି ଜୀବନେ,
ପହିଲି ଯେ ଦିନ ଦେଖିଲି ନୟନେ
ସୁଷମା ଶ୍ୟାମର, ଥିଲି କି ଏ ଜଗତରେ ?
ଭୁଲିଲି ଦେମ ହର କୁଳମାନ ଜ୍ଞାନ
ଅନ୍ଧ ହେଲି ନିମିଷରେ ।" ଇତ୍ୟାଦି

ଆମ ନାରୀକବିଙ୍କର ନାୟକନାୟିକାଙ୍କ ପ୍ରାଥମିକ ଭେଟର ବର୍ଣ୍ଣନା ସେତେ ଚମତ୍କପ୍ରଦ ହୋଇନାହିଁ । ବୋଧହୁଏ ଶ୍ରୀମତୀ ପୂର୍ବରୁ ଶ୍ରୀକୃଷ୍ଣଙ୍କୁ ମୁହାଁମୁହିଁ ହୋଇ ନ ଦେଖିଥିଲେ ମଧ୍ୟ ଆଡ଼-ନୟନରେ ଦେଖିଥିବେ । ସେହି ହେତୁ ଏହି କୌତୁକପୂର୍ଣ୍ଣ ଓ ମହାଆନନ୍ଦମୟ ମଧୁମୟ ଘଟନାକୁ କୁନ୍ତଳାକୁମାରୀ ନୀରସ ଭାବରେ ଅଳ୍ପ ଦୁଇ ତିନି ପଂକ୍ତି ଭିତରେ ଶେଷ କରିଦେଇଛନ୍ତି ।

କବି ଗୋପାଳକୃଷ୍ଣ ଏହି ବିଷୟକୁ ବଡ଼ ହୃଦୟସ୍ପର୍ଶୀ କରି ଲେଖିଛନ୍ତି । ଦିନେ ତାଙ୍କ ଶ୍ରୀମତୀ ବେଳାଶିଳା (ତୁଠପଥର) ଉପରେ ବସି ହେଳାରେ ଦେହ ଘଷି ମାଜି ହେଉଥିବା କାଳରେ ହଠାତ୍ ଯମୁନାତୀରରେ କିଶୋରଚନ୍ଦ୍ରମାଙ୍କ ସହିତ ତାଙ୍କର ମୁହାଁମୁହିଁ ଭେଟ ହୋଇଗଲା । କବି ଏହି ଘଟଣାକୁ ଲକ୍ଷ୍ୟ କରି ନିଜର ଅମର-ତୂଳିକାରେ ଯେଉଁ ଜୀବନ୍ତ ଚିତ୍ର ଅଙ୍କନ କରିଅଛନ୍ତି, ତାହା ଯେ କୌଣସି ଦେଶର ସାହିତ୍ୟରେ ଉଚ୍ଚ ସ୍ଥାନ ଅଧିକାର କରିବ, ଏଥିରେ ସନ୍ଦେହ ନାହିଁ । ଗୋପାଳକୃଷ୍ଣ ଲେଖିଛନ୍ତି—

"ମୁହାଁମୁହିଁ କିଶୋରଚନ୍ଦ୍ରମାଙ୍କର ମୋର
ଆଜି ଯମୁନା ତୀରେ ହୋଇଗଲା ମା ।
ବେଳାଶିଳାରେ ବସି ହେଳାରେ ତନୁ ଘଷି
ହେଉଥିଲି ବୟସୀ ଠାରିଦେଲେ ମା ।
ଉଠୁ ମୁଁ ହଟି କରି ଆଳି ଆପଟ କରି
ଦୃଢ଼ ପ୍ରତୀକ ଯାକ ଅରିଗଲା ମା ।
ପିଠି ଚରଣ କେଶ ଲେଟୁଥିଲା ମୋ ବାସ
ଥିବାଠାରେ ଯତନରେ ନ ଥିଲି ମା ।
ଆଉରି ରହି ବୋଲି ସେ କାଳେ ଭୂରୁ-ବଲ୍ଲୀ

ଗୃହେ ଗୃହେଁ ଗୋ ଜାନ ହଜିଗଲା ମା ।
ପରରକୁ ଆଶ୍ୱାସେ ପଥ ମୋତେ ନ ଦଶେ
ପାଣିରେ ବୁଡ଼ ଆଳ କହିଦେଲ ମା ।
ବୁଡ଼ିଗଲି ଲଜରେ କାଳନ୍ଦ ନଦୀ ଶୀତର
ଗୋପାଳକୃଷ୍ଣ ବାଟ କଢ଼ାଇଲା ମା ।"

ଏ ପ୍ରଥମ ଦର୍ଶନ ପରେ ନାୟକଙ୍କ ରୂପକୁ ଧ୍ୟାୟି ନାୟିକା ଯେଉଁ ଭାବରେ ଜୀବନ ଯାପନ କରନ୍ତି, ତାହା ଦେଖିବାର ବିଷୟ । ଗୋପାଳକୃଷ୍ଣ ଲେଖିଛନ୍ତି :—

"କାହ୍ନୁଙ୍କ ଶ୍ୟାମ ମୂରତି ଗୋ
ସଦା ଦିଶୁଛି ମୋତେ ଦିନରାତି ଗୋ ।
ପଛୁ ଆସିଲା ପରି ହୁଏ ମୋତେ
ଗୃହେଁ ଲେ କେ ନ ଦିଶେ, ଏ କି ରୀତି
ଆସି ଆଗେ ରହୁ ହେ ଛି ଇରତୀ
ବୋଲୁ ମୋ ହୃଦେ ଲୁକୁଛି ଝଟତି
ଆଖି ବୁଜିଲେ କୁଞ୍ଜ ବନେ ନିତି
ସ୍ୱପ୍ନେ ବୁଲୁଛନ୍ତି, ଏକି ବିପତ୍ତି !
ଘରୁ ଅଗଣାକୁ ଯିବାକୁ ଭୀତି
ଲାଗିଲାଣି ମତେ, କହ କି ଗତି ?
କୃଷ୍ଣ କୃଷ୍ଣ ବୋଇଲାରୁ ଭାରତୀ
କାନରେ ପଡ଼ିଲେ ଥରୁଛି ଛାତି—
ଗୋପାଳକୃଷ୍ଣ ବୋଲଇ ବିରତି
ବିଷରୁ ହେଉଛି ଏପରି ସ୍ଥିତି—"

କୁନ୍ତଳାଙ୍କ ଶ୍ରୀମତୀ ଅଳଙ୍କାରଶାସ୍ତ୍ରବର୍ଣ୍ଣିତା ଅଷ୍ଟ ନାୟିକା ରୂପ-ଭେଦରେ ମୂଳରୁ ଶେଷ ପର୍ଯ୍ୟନ୍ତ ଅଳ୍ପ ବିଶେଷ ଭାବରେ ଚିତ୍ରିତ ହୋଇ ଅଛନ୍ତି ।

"ଆହା ! ଏଇ ପଥେ ଯିବ ବୋଲି
ନିଶି ନିଶି ମୁହିଁ ଥିଲି ଉଜାଗର, ରଖିଲି କବାଟ ଖୋଲି ।
ଅତର ଚନ୍ଦନେ ହୋଇଲି ବେଶ ସଜ ସୁମନରେ ସାଜିଲି କେଶ,
ଘନ ଅନ୍ଧକାରେ କାହିଁ ସେ ମିଶିଲା ଭୁଲେ ନ ପାରିଲି ଦେଖି,
ସବୁଦୋଷଯାକ ମନ ଆକୁଳରେ କପାଳରୁ ଦେଲି ଲେଖି ।"

ନାୟକଙ୍କ ଆଗମନକୁ ଅପେକ୍ଷା କରି କରି ଉଦ୍‌ବେଗମୟ ଚିତ୍ତରେ ନାୟିକା ଏପରି କହୁଥାଆନ୍ତି । ମହାକବି ଉପେନ୍ଦ୍ର ଭଞ୍ଜ ବାସକସଜ୍ଜା ନାୟିକାଙ୍କର ଏବଂ ବିଧ ଅବସ୍ଥାକୁ ବର୍ଣ୍ଣନା କରି ଲେଖି-ଛନ୍ତି—

"ସୁମତି ଅଧରୀ ଶର୍ବରୀ ବିଳାସିନୀ କଣ୍ଠରୁ ପରି ।
ଶିଥିଳିତ ହାର, ଦେଖି ତାର, ସ୍ୱାମୀ ନଇଲେ ରେ କି ଧେନି ?
ସଜାଇଛୁ ଆଗ ସେବତୀ ପାଖୁଡ଼ା ବିଛି ଦିବ୍ୟ ଶେଯ
ପିନ୍ଧି ହେମରାଜ, ଏହି ହେଜ ରେ ।" ଇତ୍ୟାଦି ।

କବି ବନମାଳୀଙ୍କ ଶ୍ରୀମତୀ ନିଜେ ସୁସଜ୍ଜିତା ହୋଇ ପ୍ରଦୀପ-ଟିକ ଜାଳି ସୁକୋମଳ ତଳ୍ପକୁ ସୁବାସିତ କୁସୁମରେ ସଜ୍ଜିତ କରି କୁସୁମହାର ହାତରେ ଧରି ନଟବର ଶ୍ରୀକୃଷ୍ଣ ଆଗମନକୁ ଅପେକ୍ଷା କରି ସମଗ୍ର ରାତି ଉଜାଗର ହୋଇଥିଲେ ।

"ହୋଇଅଛି ଦିବ୍ୟ ସଜ   ସଜାଇ କୁସୁମେ ଶେଯ
ଜଳାଇ ପ୍ରଦୀପରାଜ
କହିଛି ଆସିବେ ଆଜ ।

ଖଞ୍ଜିଛି ପୂଗ ତାମ୍ବୁଳ ଗୁନ୍ଥିଛି କୁସୁମମାଳ
ଟେରରେ ରଖିଛି ଛଳ
ସଦନ କର ମଞ୍ଜୁଳ ।" ୨ । ଇତ୍ୟାଦି

ପୀତାମ୍ବର ଦେବ, ଶ୍ରୀଚନ୍ଦନ, ପଦ୍ମନାଭ, ସୋମନାଥ ଦେବ, ଗୌରହରି, କବିସୂର୍ଯ୍ୟ ପ୍ରଭୃତି କବିମାନେ ଏ ସମ୍ବନ୍ଧରେ ବହୁତ ଲେଖି ଯାଇଛନ୍ତି । ସେମାନେ ନିଜର କବିତାକୁ ଉତ୍କଟ ଆଦିରସାଶ୍ରିତ କରିଦେଇଛନ୍ତି; କିନ୍ତୁ ନାୟିକା ହୃଦୟର ବ୍ୟଥା ଓ ଉନ୍ମାଦନାକୁ ସେମାନେ ଯେପରି ଭାବରେ ପ୍ରକଟିତ କରି ଲେଖିଛନ୍ତି, କୁନ୍ତଳାକୁମାରୀ ସେପରି କରିପାରିଛନ୍ତି ବୋଲି ମୋର ମନେ ହେଉ ନାହିଁ ।

ଶ୍ରୀକୃଷ୍ଣଙ୍କ ଚିନ୍ତାରେ ବିହ୍ୱଳା ହୋଇ ଭାବାବେଶରେ ଶ୍ରୀମତୀଙ୍କର ସଂଜ୍ଞା ଲୋପ ହେଲା । ତାଙ୍କର ଏହି ଅବସ୍ଥାକୁ ଲକ୍ଷ୍ୟ କରି ପ୍ରିୟସଖୀ ଲଳିତା ଏକାନ୍ତ କାତର ହୋଇପଡ଼ିଲେ । ପୂର୍ବେ ଶ୍ରୀକୃଷ୍ଣଙ୍କ ପ୍ରତି ଆକୃଷ୍ଟ ନ ହେବାପାଇଁ ବହୁବାର ସେ ଶ୍ରୀମତୀଙ୍କୁ ଉପଦେଶ ଦେଇଥିଲେ; କିନ୍ତୁ ଶ୍ରୀମତୀ ତାଙ୍କ ବାକ୍ୟ ପ୍ରତି କର୍ଣ୍ଣ ନ ଦେଇ ନିଜେ ସେ ଅବସ୍ଥାକୁ ଆସିଥିବାରୁ ଲଳିତା ଈଷତ୍ ବିରକ୍ତି ପ୍ରକାଶ କରି କହୁଛନ୍ତି, ପ୍ରେମ ଚିନ୍ତାମଣିରେ—

"ଅନା ନା, ମନା କରିଥିଲି କେତେ
ଯାତନା ପାଇଲୁ ସିନା ଅକାରଣେ ଏତେ ।
ତା ଚିନ୍ତାରେ ପୂର୍ଣ୍ଣକାନ୍ତି
ତେଜିଲୁ ତୋ ଦେହ ।
ଦଣ୍ଡେ ତୋ କଥା ତା ମନେ
ପଡ଼େ କି ସନ୍ଦେହ ।

ଫୁଲମାଳ ବୋଲି ଭଜିଲି ତୁ ଅହି
ଚନ୍ଦନ ଭ୍ରମେ ଦହନେ ହେଉଛୁଟି ଦହି ।" ଇତ୍ୟାଦି

ଠିକ୍ ଏହି ଅବସ୍ଥାକୁ ଲକ୍ଷ୍ୟ କରି ବଳଦେବ କବିସୂର୍ଯ୍ୟ ଲେଖିଛନ୍ତି—

"ମନା ମୁଁ କରୁଥିଲି ଏହାକୁ ଗୋ
ଅନା ନାଁ ବୋଲି ବନଗିରିହାକୁ ଗୋ ।
ଅନାଦରି ମୋ ଗିରେ କଲି ଯା ଏବେ ସ୍ମରେ
ଲଭିଲି ଦୁଃଖ ହେଲି ତାହାକୁ ଗୋ ।"

'ନିସୃଷ୍ଟା' ଶ୍ରେଣୀୟା ଦୂତୀ ଏପରିହିଁ କହିଥାଏ । ଅଷ୍ଟ ପ୍ରକାର ଦୂତୀଙ୍କ ମଧ୍ୟରେ ନିସୃଷ୍ଟା ଦୂତୀ ପ୍ରଧାନା ଅଟେ । କୁନ୍ତଳାଙ୍କ କବିତାରେ ଦୌତ୍ୟର ସ୍ଥାନ ମଧ୍ୟ ସଂସ୍କୃତ ସାହିତ୍ୟର ଆଇନ କାନୁନ ମାନି ଚାଲିଅଛି ।

ସମଗ୍ର ବ୍ରଜବଜାରରେ ଶ୍ରୀମତୀ ପରପୁରୁଷ ଶ୍ରୀକୃଷ୍ଣର ପ୍ରେମ-ଭିକାରୁଣୀ ବୋଲି ପ୍ରଚ୍ଛରିତ ହୋଇ ସାରିଲି ପରେ ଶ୍ରୀମତୀଙ୍କ ମନରେ ଯେଉଁ ଭାବ ଜାଗ୍ରତ୍ ହୋଇଥିବ, ତାହା କବି ବିନା କିଏ ବର୍ଣ୍ଣନା କରିପାରିବ ? ଶ୍ରୀକୃଷ୍ଣଙ୍କୁ କ୍ଷଣେ ନ ଦେଖିଲେ ଯାହାଙ୍କ ପ୍ରାଣ ମନ ଆକୁଳ ହୋଇଉଠେ, ସେ କିପରି ଅବା ନିଶ୍ଚିନ୍ତ ରହିପାରିବେ ? ସବୁ କଳଙ୍କକାଳିମା ବରଣ କରି ନିଜ ହୃଦୟକୁ ପଥର କରି ସମାଜ ବିରୁଦ୍ଧରେ ଠିଆ ହେବାର ସାହସ କେବଳ ଶ୍ରୀମତୀଙ୍କର ଥିଲି । ସାଇପଡ଼ଶା, ଗୁରୁଜନ ଯେ ଯାହା କହୁ, ଭର୍ତ୍ସନା, ପଦାଘାତ କରନ୍ତୁ ସେଥିପାଇଁ ସେ ବଧିରା । କେବଳ କୃଷ୍ଣଙ୍କ ପ୍ରସାଦଲଭହିଁ ତାଙ୍କର ଚରମ ଧ୍ୟାନ ଥିଲା ।

ନାୟିକାବି କୁନ୍ତଳା ଲେଖିଛନ୍ତି—

"ଅମୃତରୁ ସାର ତା ନାମ କର୍ଣ୍ଣର
ଭୂଷଣ କଲିଣି ଏଣିକି
ହୋଇ ଯା ବଚନ ହେଉ ସା ଦୂଷଣ
ତଳେ ଭୀତ ନାହିଁ ତହିଁକି ।
ଯେଝା ଇଚ୍ଛା ଯାହା କହନ୍ତୁ ମୁଖେ ମୋ
କେହି ନ ରୁହାନ୍ତୁ
ଅଳଅ ଜଞ୍ଜାଳେ ଫିଙ୍ଗିଦେଇ ମୋତେ
ଅବଜ୍ଞାରେ ପାଦେ ଦଳନ୍ତୁ ।"

× × × ×

ଏତେ ଦୁଃଖ ଭୂଷଣ ସହ୍ୟକରି ସମାଜର ଧିକ୍କାରକୁ ଗଳାର ମାଳା କରି ବାରବର୍ଷର ତପସ୍ୟା ଫଳରେ ଯେଉଁ ମନମୋହନ କୃଷ୍ଣଙ୍କର ପ୍ରସାଦ ଲାଭେଚ୍ଛାରେ ଶ୍ରୀମତୀ ଏତେ ବ୍ୟାକୁଳ, ସେ ବା ତାଙ୍କ ବିନା କିପରି ଜୀବନ ଧାରଣ କରିବେ ? ଯଦି ଶ୍ରୀକୃଷ୍ଣ ନିଜ ପ୍ରସାଦର କଣିକାଏ ତାଙ୍କ ପ୍ରତି ଦୟା ନ କରନ୍ତି, ତା ହେଲେ ଶ୍ରୀମତୀ ଅର୍ଥିତ, ନିର୍ମାଖୀ ହୋଇ ସଂସାରରେ ବୁଲି ବୁଲି ତାଙ୍କର ନାମ ପ୍ରଚାର କରିବେ । କୁନ୍ତଳାକୁମାରୀ ଲେଖିଛନ୍ତି—

"ଅର୍ଥିତ ନିର୍ମାଖୀ ବୁଲିବି ସଂସାରେ
ଭିକାରୁଣୀ ବେଶେ ଦୁଆରେ ଦୁଆରେ
ଭଙ୍ଗା କେନ୍ଦରାରେ ଗାଇବି ତା ନାମ
ପ୍ରାଣାରାମ ପ୍ରିୟ ! ଶତପ୍ରାଣାରାମ ।"
ସେତିକି ମୋ ଧର୍ମ ଧାରଣା ।

ଯୋଗ ଯାଗ ଜପ ତପ କାଷ୍ଠା ନିଷ୍ଠା
ପୂଜାପାଠ ମୋତେ ଅଜଣା ।"

ବାସ୍ତବିକ ଏପରି ଭାବ କଳ୍ପି କମ୍ ପ୍ରଶଂସାର କଥା ନୁହେଁ । ରାଧିକାଙ୍କୁ ନ ପାଇଲେ ଶ୍ରୀକୃଷ୍ଣ ଫକୀର ହୋଇ ଭିକ୍ଷା ଝୁଲି ଧରି ରାଧାଙ୍କ ନାମ ଗାଇ ସଂସାରରେ ବିଚରଣ କରିବେ ବୋଲି ଶ୍ରୀକୃଷ୍ଣ ସଂକଳ୍ପ କରିଥିବା ବିଷୟ ଅଭିମନ୍ୟୁ ସାମନ୍ତସିଂହାର ତାଙ୍କ ଅଭିନବ ଚିନ୍ତାମଣିରେ ବର୍ଣ୍ଣିଛନ୍ତି, କିନ୍ତୁ ନାୟିକାଙ୍କର ଏତାଦୃଶ ଭାବ ଖୁବ୍ କମ୍ କବି ବର୍ଣ୍ଣି ପାରିଛନ୍ତି । କେଉଁ କବି ରାଧାଙ୍କ ମୁହଁରେ କହିଛନ୍ତି 'ବିଷ ଜହର ଖାଇ ଅବା ଯମୁନାରେ ଝାସ ଦେଇ ଜୀବନ ବିସର୍ଜନ କରିବି', କିନ୍ତୁ ସମାଜର ଛାତି ଉପରେ ଛିଡ଼ା ହୋଇ ପ୍ରେମିକଙ୍କ ନାମ ଗାୟନ କରି କରି ସନ୍ନ୍ୟାସିନୀ ବେଶରେ ସମାଜରେ ବିଚରଣ କରିବାର ସାହସ କୁନ୍ତଳାକୁମାରୀଙ୍କ ଶ୍ରୀମତୀଙ୍କଠାରେ ଦେଖାଯିବ । ଗୋଟିଏ ବିଶିଷ୍ଟ ଲକ୍ଷିତବ୍ୟ ଘଟନା ବୋଲି ମନେହୁଏ । କୁନ୍ତଳା ପ୍ରଥମ ଜୀବନରେ ଜପ ତପ ହୋମ କ୍ରିୟାଦିରେ ବିଶ୍ୱାସ କରୁ ନ ଥିଲେ; ପରେ 'ଆର୍ଯ୍ୟସମାଜ' ଭୁକ୍ତ ହେବାରୁ ହୋମ କ୍ରିୟା ପ୍ରଭୃତିରେ ତାଙ୍କର ମନ ବଳିଥିଲା ।

ରାଧାକୃଷ୍ଣ ଲୀଳାବିଷୟକ କବିତାକଲ୍ଲୋଳିନୀ-ଜଳଳ ଭୂମିରେ ପ୍ରବାହିତ କରିବାର ସ୍ପୃହା ଜାଗ୍ରତ ହେବା ବିଷୟରେ ଏହି ଆର୍ଯ୍ୟ-ସମାଜର ଦୀକ୍ଷା କେତେକ ପରିମାଣରେ ସହାୟ ହୋଇଥିଲା; ଏହା ବାସ୍ତବିକ ଚିନ୍ତନୀୟ ବିଷୟ ।

କୁନ୍ତଳାକୁମାରୀଙ୍କ କୃଷ୍ଣ ସାଧାରଣତଃ ଶଠ ନାୟକ ନ ହେବା ଭଳି ଜଣାଯାଏ । ତାଙ୍କ କବିତାବଳୀରେ ଏଥିର ପ୍ରାରମ୍ଭିକ ସୂଚନା

ହିଁ ମିଳେ । କୁନ୍ତଳାଙ୍କ କବିତାରେ ଶ୍ରୀକୃଷ୍ଣ ଧୀରୋଦ୍ଧତ ନାୟକ ବୋଲି ସୂଚିତ ହୋଇଛନ୍ତି । ଯେଉଁଠି ଶ୍ରୀକୃଷ୍ଣ କହୁଛନ୍ତି :—

"ଗଲଣି ସେ ଦିନ ସଖା ! ଗଲଣି
ମାନସ ସଦନୁ ତାହା ନେଇଛୁ ମେଲଣି ।
ପ୍ରାଣେ ଅଛି ମାତ୍ର ସ୍ମୃତି ତାର
ଅଛି ମାତ୍ର ମରମରେ ଗାର ।" ଇତ୍ୟାଦି,

ସେଠାରେ ହୁଏତ ଧାରଣା ହୋଇପାରେ ଯେ, ଶ୍ରୀକୃଷ୍ଣ ଆଉ ରାଧାଙ୍କୁ ପାଇ ପାରିବେ ନାହିଁ, ତାଙ୍କର ସକଳ ଚେଷ୍ଟା ନିଷ୍ଫଳ ହେବ । କିନ୍ତୁ ଦିନେ ଯେ ଶ୍ରୀମତୀ ରାଧିକାଙ୍କୁ ସେ ନିଶ୍ଚୟ ପାଇବେ, ଏ ଆଶା ତାଙ୍କ ହୃଦୟରେ ଜାଗ୍ରତ ଥିବା କଥା କବି ଅନ୍ୟାନ୍ୟ କବିତାରେ ବର୍ଣ୍ଣନା କରିଛନ୍ତି । ଧୀରୋଦ୍ଧତ ନାୟକ ବିରହ ଅନୁରାଗରେ ମୂର୍ଚ୍ଛାଦଶା ଅନୁଭବ କରି ଅନୁଚିନ୍ତା ବଳରେ ଏପରି କରିଥାଅନ୍ତି । ଉଜ୍ଜ୍ୱଳଭାରତୀଙ୍କ କୃଷ୍ଣ ଶ୍ରୀମତୀଙ୍କ ପରି ସାଧକ ନୁହନ୍ତି । ଶ୍ରୀମତୀ କୃଷ୍ଣଙ୍କୁ ପାଇବେ ବୋଲି ଯେତେ ଧ୍ୟାନ ଧାରଣା କରୁଥିଲେ, କୃଷ୍ଣ ଶ୍ରୀମତୀଙ୍କୁ ପାଇବେ ବୋଲି ସେପରି କରୁଥିବା ମନେ ହେଉ ନାହିଁ । କୁନ୍ତଳାକୁମାରୀଙ୍କ ପ୍ରେମଚିନ୍ତାମଣିରେ ଈର୍ଷୀଦୂତର ଲକ୍ଷଣ ମିଳେ ନାହିଁ । ସୁଦାମ ଓ ସୁବଳ ସଖାଦୂତ ରୂପେ ଓ କେବେ କେବେ ପ୍ରେମ ଦୂତ ରୂପେ ଦେଖା ଦେଇଛନ୍ତି । ସୁବଳ କହୁଛନ୍ତି—

"ସଖା ! ତୋହରି ପାଇଁ କି ଝୁରିଝୁରି
ସୁଧା ଢଳଢଳ ଅଙ୍ଗ ନିରମଳ କୋମଳବାଳୀକୁ ଦେଲୁ ସାରି ।"

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ସଖାମାନଙ୍କ ସାହାଯ୍ୟ ନେଇ ନାୟିକାଙ୍କୁ ପାଇବେ ବୋଲି ନାୟକ ସକଳ ଚେଷ୍ଟା କରିଥିଲେ ।

ସେଥିପାଇଁ ପ୍ରେମିକ ଓ ନାୟକଙ୍କର ଆଶ୍ରିତଦୂତ ଓ ପ୍ରେମଦୂତ ଅବଶ୍ୟକ ହୋଇଥାଅନ୍ତି । କୁନ୍ତଳାକୁମାରୀ ଶ୍ରୀମତୀ ଓ କୃଷ୍ଣଙ୍କର ଲୀଳା ବର୍ଣ୍ଣନାକୁ ଦୂତ ଦୂତୀଙ୍କ ସାହାଯ୍ୟରେ ଫୁଟାଇବାକୁ ଚେଷ୍ଟା କରିଛନ୍ତି । ବାସ୍ତବ ଜୀବନ ସହିତ କୁନ୍ତଳାକୁମାରୀଙ୍କର କାଳ୍ପନିକ ନାୟକ ନାୟିକାଙ୍କ ପ୍ରେମକାହାଣୀର ବହୁତ ସାମଞ୍ଜସ୍ୟ ଅଛି । ଏହି ସାମଞ୍ଜସ୍ୟ ରହିଛି ବୋଲିହିଁ ଏହି ଗ୍ରନ୍ଥ ସାଧାରଣ ଜନସମାଜର ହୃଦୟକୁ ସ୍ପର୍ଶ କରିପାରିଛି । କୁନ୍ତଳାକୁମାରୀ ଗ୍ରନ୍ଥର ପ୍ରସ୍ତାବନାରେ ଶ୍ରୀକୃଷ୍ଣ ଓ ରାଧାଙ୍କୁ ନାୟକ ଓ ନାୟିକା ଭାବରେ ଗ୍ରହଣ କରି ଏହି କବିତା ରଚନା କରିନାହାନ୍ତି ବୋଲି ଯାହା ଲେଖିଛନ୍ତି, ତାହା ଏକାନ୍ତ ବାସ୍ତବ ଏଥିରେ ଦ୍ୱିଧାର ସ୍ଥାନ ନାହିଁ ।

ପ୍ରେମଚିନ୍ତାମଣିର ନାୟକ ସଖୀମାନଙ୍କଠାରୁ ଶୁଣି ନାୟିକାଙ୍କ ରୂପଲାବଣ୍ୟ ସମ୍ବନ୍ଧରେ ମନରେ ଧାରଣା କରିବା ପୂର୍ବରୁ କୌଣସି ଘଟଣାସୂତ୍ରରେ ନିଜେ ନାୟିକାଙ୍କୁ ଦେଖିଥିଲା ପରି ବୋଧ ହେଉଛି ।

"ସଖୀ ! ଏଇ ପଥେ ଗଲା ଚାଲି
ମରମେ ବାଜିଲା ବାସନା କଣ୍ଟକୀ, ଧୈର୍ଯ୍ୟ ଦେଲା ମୋ ଟାଳି ।
ଭୂଇଁରେ ଉଇଁଲା ସହସ୍ର ଶଶୀ, ଶତ ତାରା ଅବା ପଡ଼ିଲେ ଖସି,
ନନ୍ଦନ ନବ ଫାଲ୍‌ଗୁନ ଶୋଭା ଅବନୀରେ ଦେଲା ଢାଳି ।
ଦେଖି ତ ଆଶା ନ ପୂରିଲା, ବେନି ନୟନ ମୋ' ଝୁରିଲା
ସେଦିନୁ ତାର ରୂପ ଦରଶନ ଆଶେ ବୁଲିଲି ଦିବସ ଯାମିନୀ ।
ବନେ ବନେ ନିତି ବଜାଇ ବାଂଶରୀ ସୁମରି ସେ ରୂପ କାମିନୀ
ଯମୁନାର କୂଳେ କେତେ ନିଶି ଭୋଳେ ଉଜାଗରେ ଦେଲି ସାରି
କଦମ୍ବ କମଳେ ଗୁନ୍ଥି ବନମାଳା ପିନ୍ଧି ମୁଁ ଅଳି ଚାଳି ।,

ପ୍ରଥମେ ନେତ୍ରପଥରେ ନାୟିକାଙ୍କର ଉପସ୍ଥିତି ହେବା ମାତ୍ରେ ନାୟକଙ୍କ ମନରେ ସ୍ୱତଃ ପ୍ରେମର ଭାବ ଜାଗ୍ରତ୍ ହୋଇଥିଲା । ସେ ଅତର୍କିତ ଭାବରେ ନିଜର ଅଜାଣତରେ ନିଜେ ନାୟିକାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ଶ୍ରୀମତୀଙ୍କର ମଧୁର ମନୋରମ ରୂପ କ୍ଷଣକ ପାଇଁ ଯଦି ତାଙ୍କର ନେତ୍ର ଦେଖିବାର ସୌଭାଗ୍ୟ ପାଇବ, ତେବେ ଶ୍ରୀକୃଷ୍ଣ ନିଜକୁ ପରମ ଧନ୍ୟ ମନେ କରିବେ; ଏହି ଆଶାରେ ବହୁନିଶି ଉଜାଗର ରହି ଯମୁନାକୂଳେ ନୀପତରୁ ତଳେ ରାଧାନାମ ଡାକ ବଂଶୀ ବଜାଉଥିଲେ, କିନ୍ତୁ ଏଥିରେ ସେ କୃତକାର୍ଯ୍ୟ ହୋଇଥିଲେ ବୋଲି ଜଣାଯାଏ ନାହିଁ । ଶ୍ରୀମତୀଙ୍କ ସଖୀ ଓ ଶ୍ରୀକୃଷ୍ଣଙ୍କ ସଖାମାନେ କେବଳ ଏହି ଆକାଙ୍‌କ୍ଷାକୁ ପୂର୍ଣ୍ଣ କରାଇଥିଲେ ବୋଲି ପ୍ରମାଣ ମିଳେ ।

ନାୟିକାଙ୍କୁ ଦର୍ଶନ କରିବା ପୂର୍ବରୁ ତାହାଙ୍କ ରୂପଲାବଣ୍ୟର ବର୍ଣ୍ଣନା ସଖାମାନଙ୍କଠାରୁ ଶୁଣି ତାଙ୍କୁ ଦର୍ଶନ କରିବା ପାଇଁ ନାୟକଙ୍କର ବ୍ୟାକୁଳ ହେବାର ବର୍ଣ୍ଣନା ଓଡ଼ିଆ ସାହିତ୍ୟରେ ବହୁ କବିଠାରୁ ମିଳେ । ସଖାଙ୍କ ସାହାଯ୍ୟରେ ନାୟିକାଙ୍କୁ ଦର୍ଶନ କଲା ପରେ ତାର ପରିଚୟ ପାଇବା ପାଇଁ ନାୟକଙ୍କ ମନରେ ବ୍ୟାକୁଳତା ଜନ୍ମିବା ସ୍ୱାଭାବିକ । ଏହି ସ୍ୱାଭାବିକ ବ୍ୟାକୁଳତାର ବଶବର୍ତ୍ତୀ ହୋଇ ଗୋପାଳକୃଷ୍ଣଙ୍କ ସଙ୍ଗୀତରେ ଶ୍ରୀକୃଷ୍ଣ କହୁଛନ୍ତି—

"କହ ରେ ସଙ୍ଗିମା ତେ ସେ ନୂଆ ଲଳନା
କାନ୍ତି କୁଳଦେବତା କି କର କଳନା ।" ଇତ୍ୟାଦି

ପ୍ରେମଚନ୍ଦ୍ରାମଣିର ଶ୍ରୀକୃଷ୍ଣ ପୂର୍ବରୁ ନାୟିକାଙ୍କ ପରିଚୟ ନିଜେ ଜାଣିଥିଲେ ଏବଂ ନାୟିକାଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇ ତାଙ୍କ ରୂପଲାବଣ୍ୟ ଦର୍ଶନପ୍ରାପ୍ତି ନିମିତ୍ତ ଯେଉଁ ବ୍ୟାକୁଳତା ତାଙ୍କ

ହୃଦୟରେ ଜାତ ହୋଇଥିଲା, ତାହା ନିଜ ବେଶ ସଖୀମାନଙ୍କ ଆଗରେ ଅଗୋଚର ରହି ପାରିଲା ନାହିଁ । ପ୍ରିୟସଖା ଶ୍ରୀକୃଷ୍ଣଙ୍କ ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବ କରୁଥିବା ଉପଲବ୍ଧି କରି ସୁଦାମ ଆକୁଳକଣ୍ଠରେ କହିଲେ—

"ଯଦୁମଣି, ତୋ ନୟନମଣି, କେ ସେ ରମଣୀ ।
ଚିତ୍ତକୁମୁଦ ମୋଦିନୀ ଇନ୍ଦୁ ସୁଧା ଝଣି
କିଏ ସେ ନବନଳିନୀ ନବ ରବି ବିନୋଦିନୀ ।" ଇତ୍ୟାଦି

ଅନୁକୂଳ ନାୟକଙ୍କ ମନୋଭାବ, ସାଧାରଣ ମାନବ ଜୀବନରେ ଦେଖାଯାଏ । କେତେକ ମନସ୍ତତ୍ତ୍ୱବିଦ୍ ପଣ୍ଡିତମାନଙ୍କ ମତରେ ଅଧିକାଂଶ ନାୟକ ଶଠନାୟକ ହେବା ପାଇଁ କେବଳ ଇଚ୍ଛା କରି-ଥାଆନ୍ତି; ଏହା କୁଆଡ଼େ ମନର ଓ ପ୍ରାଣର ସ୍ୱାଭାବିକ ଗତି । ଓଡ଼ିଆ କବିମାନେ ଶଠ ନାୟକଙ୍କ ଚିତ୍ର ବହୁତ ଅଙ୍କିତ କରିଛନ୍ତି କିନ୍ତୁ ଶଠ ନାୟକଙ୍କ ବିପରୀତା ନାୟିକାଙ୍କୁ ଚିତ୍ରଣ କରି ନାହାନ୍ତି । ଏହି ଚିତ୍ର ନରସମାଜ ସହ୍ୟ କରି ପାରିବ ନାହିଁ । ଜଣେ ପୁରୁଷ ଶଠ ନାୟକ ହୋଇପାରେ, ତା ଚିତ୍ର କବିମାନେ ଆଙ୍କି ପାରନ୍ତି ଏବଂ ତାକୁ ପୁଣି କୃଷ୍ଣଙ୍କ ନାମ ସାହାଯ୍ୟରେ ଘୋଡ଼ାଇ ଦେଇପାରନ୍ତି; କିନ୍ତୁ ଶଠ ଶ୍ରୀକୃଷ୍ଣଙ୍କ ବିପରୀତ, ଶଠ ମନୋଭାବାପନ୍ନ ରାଧାଙ୍କ ଚିତ୍ର ଆଙ୍କି ନାହାନ୍ତି । ଯଦି କେହି ସେପରି ସାହସ କରିଥାଆନ୍ତେ, ସମାଜରେ ସେହି ରାଧାଙ୍କୁ ଗଣିକା ରାଧା ବୋଲି ଆଖ୍ୟା ଦେବା ପାଇଁ ବହୁତ ଲୋକ ଉଦ୍‌ଗ୍ରୀବ ହୋଇପଡ଼ନ୍ତେ । ବାସ୍ତବିକ୍ କହିବାକୁ ଗଲେ ଶଠ ନାୟକଙ୍କର ଗଣିକା ହିଁ ସମସମାନ ନାୟିକା । କୁନ୍ତଳା-କୁମାରୀଙ୍କର ନାୟକ ଅନୁକୂଳ ନାୟକ । ସେହି ହେତୁ ଶଠ ନାୟକଙ୍କ ଚିତ୍ର ସେ ଦେଇ ନାହାନ୍ତି କହିଲେ ଚଳେ ।

ଯେଉଁଠାରେ ଶଠ ନାୟକ ନାହାନ୍ତି, ସେଠାରେ ଖଣ୍ଡିତା ନାୟିକାଙ୍କ ଉକ୍ତ ମନୋଭାବ ବା କାହୁଁ ମିଳିବ । ବାସ୍ତବରେ କହିବାକୁ ଗଲେ ଗୋପାଳକୃଷ୍ଣ, ବନମାଳୀ, ଗୌରହରି, ଲୋକନାଥ, ଦେବୀସିଂହ, ଚକ୍ରପାଣି ପ୍ରଭୃତି କବିମାନେ ଖଣ୍ଡିତା ନାୟିକାର ମନୋଭାବ ବ୍ୟକ୍ତ କରି ତାର ଜୀବନ୍ତ ଚିତ୍ର ଅଙ୍କିତ କରିଛନ୍ତି । ପ୍ରକୃତରେ ଆମ ସମାଜରେ ଶଠ ନାୟକ ମନୋଭାବହିଁ ପ୍ରବଳ । ସେହି ହେତୁ ଖଣ୍ଡିତା ନାୟିକାର ଆବଶ୍ୟକତା ବହୁ ପରିମାଣରେ ଉପଲବ୍ଧି ହୋଇଛି । କୁନ୍ତଳାକୁମାରୀ ଅନୁକୂଳ ନାୟକର ଚିତ୍ରଣ-କରିବାକୁ ଭୁଲି ନାହାନ୍ତି । ସେ ଯେତେବେଳେ କୃଷ୍ଣ ରାଧାଙ୍କୁ ନିଜ କାବ୍ୟର ନାୟକ ନାୟିକା ରଚି ନାହାନ୍ତି, ତାଙ୍କ ପକ୍ଷେ ଅନୁକୂଳ ନାୟକର ଚିତ୍ର ଦେବାହିଁ ସ୍ୱାଭାବିକ ଓ ଯୁକ୍ତିସମ୍ମତ । ସେହିହେତୁ ଖଣ୍ଡିତା ନାୟିକାର ଚିତ୍ର ତାଙ୍କ ମନକୁ ଆସି ନାହିଁ । ପ୍ରେମଚିନ୍ତାମଣିରେ ଖଣ୍ଡିତା ନାୟିକାର ସ୍ପଷ୍ଟ ଚିତ୍ର ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ଉତ୍କଳ ସାହିତ୍ୟକୁ ନାରୀଙ୍କ ଦାନ—

ଆମ୍ଭେମାନେ ପ୍ରାଚୀନ ଉତ୍କଳ ସାହିତ୍ୟ ଅନୁଧାବନ କଲେ ନାରୀ କବି ଶ୍ରୀମତୀ ବୃନ୍ଦାବତୀ ଦାସୀ ଓ ନିଶଙ୍କ ରାୟ ରାଣୀଙ୍କ ଅବଦାନର ପରିଚୟ ପାଉଁ । ନିଶଙ୍କ ରାୟ ରାଣୀଙ୍କର ସାହିତ୍ୟ ସହିତ ମୋର ପ୍ରତ୍ୟକ୍ଷ ପରିଚୟ ଘଟି ନାହିଁ; ମାତ୍ର ବୃନ୍ଦାବତୀ ଦାସୀଙ୍କର କବିତାମୟ ବୈଷ୍ଣବ ସାହିତ୍ୟ ସହିତ ମୋର ପୂର୍ଣ୍ଣ ପରିଚୟ ସ୍ଥାପିତ ହୋଇଥିଲା । 'ସହକାର'ରେ ତାଙ୍କର ସାହିତ୍ୟ ଉପରେ ମୁଁ ଆଲୋଚନାମୂଳକ ଗୋଟିଏ ଦୀର୍ଘ ସନ୍ଦର୍ଭ ପ୍ରକାଶ କରିଥିଲି । ନାରୀକବି-

ମାନଙ୍କ ରଚନା ଭକ୍ତିରସାଶ୍ରିତ, ଭାବମୂଳକ ରାଗାନୁରାଗ, ହାସ୍ୟରସର ପୂର୍ଣ୍ଣ ପ୍ରକଟନ ତହିଁରେ ମୁଖ୍ୟ । ଆଧୁନିକ ଜୀବିତା ନାରୀକବିମାନଙ୍କ ମଧ୍ୟରେ ଶ୍ରୀମତୀ ରେବା ରାୟ, ଶ୍ରୀମତୀ ଅନ୍ନପୂର୍ଣ୍ଣା, ଶ୍ରୀମତୀ ଅପର୍ଣ୍ଣା ଓ ବିଷମାଣୀ ଉତ୍କଳଭାରତୀ କୁନ୍ତଳାକୁମାରୀଙ୍କ ସାହିତ୍ୟ ଉତ୍କଳଭାଷାକୁ ଓ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ଏହା ଛଡ଼ା ଅନ୍ୟାନ୍ୟ କେତେକ ନାରୀ—ଡମପଡ଼ା ରାଣୀ, ସରୋଜିନୀ ଚୌଧୁରୀ, ପିତାମ୍ବରୀ ଦେବୀ ପ୍ରଭୃତି କେତେକ ମହିଳାଙ୍କର ଯେ ସାହିତ୍ୟ ପ୍ରକାଶିତ ଓ ଅପ୍ରକାଶିତ ଭାବରେ ରହିଛି, ତାହା ସାଧାରଣରେ ପ୍ରଚାରିତ ନୁହେଁ । ଅବଶ୍ୟ ଗଦ୍ୟ-ସାହିତ୍ୟରେ ଏମାନଙ୍କର ପ୍ରଭାବ ଲକ୍ଷିତ ହୁଏ । ନାରୀକବି କୁନ୍ତଳାଙ୍କ ଦାନ ଉତ୍କଳର ଲେଖିକା କବିମାନଙ୍କ ମଣ୍ଡଳରେ ପ୍ରଧାନ ସ୍ଥାନ ଅଧିକାର କରିଅଛି । ଅବଶ୍ୟ ଏ କଥା କହିଲେ ସତ୍ୟର ଅପଲାପ ହେବ ଯେ, ନାରୀକବିଙ୍କର କବିପ୍ରତିଭା ସର୍ବତୋମୁଖୀ ଥିଲା । କାରଣ, ସାହିତ୍ୟରେ ନବରସର ପରିସ୍ଫୁଟତା ଉପରେ ସାହିତ୍ୟକାରଙ୍କ ଶ୍ରେଷ୍ଠ କୃତିତ୍ୱ ନିର୍ଭର କରେ । ଯେଉଁମାନେ ମହାକାବ୍ୟକାର, ସେମାନେ ନିଜର କାବ୍ୟ ସାହିତ୍ୟରେ ନବରସର ବିବୃତ୍ତି ସମାବେଶ କରିବାକୁ ପଟୁ ହୁଅନ୍ତି । ଆମ ଭାରତୀଙ୍କ କବିତାରେ କିନ୍ତୁ କେବଳ ବୀର, ଭକ୍ତି ଓ ପ୍ରେମ ରସ ପ୍ରକଟିତ; ଅନ୍ୟାନ୍ୟ ରସର ସମାବେଶ ନାହିଁ । କିନ୍ତୁ ଯେତିକି ପ୍ରକାଶ ହୋଇଛି, ତହିଁରେ ସର୍ବାଙ୍ଗପୂର୍ଣ୍ଣତାର ଅଭାବ ନ ଥିବାରୁ ଓ କବିଙ୍କ ବ୍ୟକ୍ତିତ୍ୱର ମୋହର ତାଙ୍କର ସାହିତ୍ୟରେ ଫୁଟି ଥିବାରୁ ତାହା ଅତି ଆନନ୍ଦ୍ୟ ଏବଂ ତହିଁରେ ଖଣ୍ଡତା ନ ଥିବାରୁ ତାହା ସ୍ୱୟଂ ସମ୍ପୂର୍ଣ୍ଣ । ତାଙ୍କର ସମକକ୍ଷ ସାହିତ୍ୟସାଧନା କେବଳ ପୁରୀବାସିନୀ ନାରୀ କବି ଅପର୍ଣ୍ଣାଙ୍କ ଛଡ଼ା ମୁଁ ଆଉ କାହାଠାରେ ଦେଖୁ ନାହିଁ । କୁନ୍ତଳାଙ୍କର କବି ପ୍ରତିଭାର

ସ୍ୱାତନ୍ତ୍ର୍ୟ; କିନ୍ତୁ ଅନବଦ୍ୟ ଓ ଅନନୁକରଣୀୟ ଥିବାରୁ ତାଙ୍କ ଆସନରେ ବସିବାର ଅଧିକାର କେବଳ ତାଙ୍କର ଅଛି । ଜୀବିତା-ମାନଙ୍କ ମଧ୍ୟରେ ଅପର୍ଣ୍ଣା ଦେବୀ ସାହିତ୍ୟ ପ୍ରକାରରେ ସ୍ୱର୍ଣ୍ଣବେଦୀ ଉପରେ ବସିଅଛନ୍ତି । କିନ୍ତୁ ତାଙ୍କ ଦାନରେ ସୌଷ୍ଠବ ଏବଂ ରସାଳପଣ ଯେତେ ବିକଶିତ ହୋଇଛି, ତହିଁର ତୁଳନାରେ ତାଙ୍କ କାବ୍ୟ ଭିତରେ ବ୍ୟକ୍ତିତ୍ୱର ପରିଚୟ ସେତେ ମନ ଉପରେ ପ୍ରଭାବ ପକାଏ ନାହିଁ । 'ଇନ୍ଦୁମତୀ' ତାଙ୍କର ଶ୍ରେଷ୍ଠ କାବ୍ୟ ବୋଲି ନିଃସନ୍ଦେହ ରୂପେ କୁହାଯାଇ ପାରେ । କିନ୍ତୁ କବିବର ରାଧାନାଥଙ୍କ କାବ୍ୟ ଗଙ୍ଗାଧର ମେହେରଙ୍କ ତପସ୍ୱିନୀ, ଇନ୍ଦୁମତୀ ଓ ଚନ୍ଦ୍ରମଣି ମହାନ୍ତିଙ୍କର କେତୋଟି କାବ୍ୟଗ୍ରନ୍ଥ ପାଠକରି ସାରିଲା ପରେ, 'ଇନ୍ଦୁମତୀ' ପଢିଲେ ତାହାର ରସାସ୍ୱାଦରେ ସ୍ୱତନ୍ତ୍ରତା ଅଛି ବୋଲି ମନେହୁଏ ନାହିଁ । କାବ୍ୟପ୍ରକାଶଭଙ୍ଗୀ, ରସନ୍ୟାସ, ଭାଷା, ଭାବ ଓ ଆଖ୍ୟାନ-ଭାଗର ସ୍ୱାତନ୍ତ୍ର୍ୟ ଓ ଭିନ୍ନତା ଏବଂ କାବ୍ୟରେ ସ୍ୱୀୟ ବ୍ୟକ୍ତିତ୍ୱକୁ ପୂର୍ଣ୍ଣାଭିବ୍ୟକ୍ତ ଦେବାରେ ହିଁ କବିଙ୍କ କୃତିତ୍ୱ ଫୁଟିଉଠେ । ଏହି କୃତିତ୍ୱ ଶ୍ରୀମତୀ କୁନ୍ତଳାକୁମାରୀଙ୍କ ସାହିତ୍ୟିକ ଅବଦାନରେ ଯେଉଁ-ପରି ରସର ଓ ଭାବାନୁଭୂତିର ବିକାଶ ବର୍ଣ୍ଣିଛି ତା ପରିଗ୍ରହ କରିଛି, ତାହା ପ୍ରାଚୀନ ଓ ଆଧୁନିକ, କେଉଁ ନାରୀ କବିଙ୍କ ଅବଦାନରେ ଦୃଷ୍ଟହୁଏ ନାହିଁ, ଏହାହିଁ ସର୍ବବାଦିସମ୍ମତ । ଗଦ୍ୟସାହିତ୍ୟରେ ମଧ୍ୟ ନାରୀ କବି କୁନ୍ତଳାକୁମାରୀଙ୍କର ସ୍ଥାନ ରହିଅଛି ଉଚ୍ଚକୋଟିରେ । ନିତାନ୍ତ ଗ୍ରାମ୍ୟ ଜୀବନ, ଦୁଃଖ ସୁଖର ଚିତ୍ର, ଓଡ଼ିଆ ଜୀବନର କରୁଣ କାହାଣୀ, ସମାଜର ଆଦର୍ଶ, ବ୍ୟକ୍ତିର କର୍ତ୍ତବ୍ୟ, ସମସ୍ତ ଦିଗକୁ ଲକ୍ଷ୍ୟ କରି ତାଙ୍କ ସାମାଜିକ ଉପନ୍ୟାସଗୁଡିକ ରଚିତ ହୋଇଅଛି । ସେ ସବୁର ଭାବ, ଭାଷା ଓ ଆଖ୍ୟାନ ଭାଗର ଆଲୋଚନା କରିବା ମୋ ସନ୍ଦର୍ଭର ଉଦ୍ଦେଶ୍ୟ ନୁହେଁ । ତେବେ ତାଙ୍କର ଗଦ୍ୟ ଯେ ନିତାନ୍ତ

ଗଦ୍ୟ, ନିତାନ୍ତ ବାସ୍ତବ ଓ ପ୍ରତ୍ୟକ୍ଷ ଦୈନନ୍ଦିନତା ଉପରେ ଗଢ଼ା-ହୋଇଛି, ଏ କଥା ନ କହିଲେ ଚଳିବ ନାହିଁ । ଗଦ୍ୟକୁ ପଦ୍ୟମୟ କରିବା ପାଇଁ ତାଙ୍କର ପ୍ରଚେଷ୍ଟା ନ ଥିବାହିଁ ସ୍ୱାଭାବିକ । ସେଥିପାଇଁ ଯାହା ଅସୀମ, ଯାହା ସୂକ୍ଷ୍ମ, ଯାହା କାନ୍ତ, ତାହାର ନିବିଡ଼ ସ୍ପର୍ଶ ତାଙ୍କ ଗଦ୍ୟରେ ନାହିଁ । ତାହା ଛଡ଼ା ଗଦ୍ୟ ତାଙ୍କର ଏତେ Prodlematic ବା ସମସ୍ୟାମୂଳକ ହୋଇଛି ଯେ, ତାହାର ନଗ୍ନତା ବା ଉଗ୍ରତା ବେଳେ ବେଳେ ସହିହୁଏ ନାହିଁ । ମନେହୁଏ, ଲେଖିକା ଉପନ୍ୟାସର ମଧ୍ୟଦେଇ ତାଙ୍କର ସାମାଜିକ ବକ୍ତୃତା ଦେଉଛନ୍ତି ବା ନାରୀଶିକ୍ଷା, ସ୍ୱାସ୍ଥ୍ୟ, ନାରୀଙ୍କ କର୍ତ୍ତବ୍ୟ ଦାମ୍ପତ୍ୟ ଜୀବନର ଆଦର୍ଶ କଥାମାନ କହୁଛନ୍ତି । ଗଳ୍ପାଂଶରେ ଏହି ଭାବସବୁ ଉଗ୍ର ହୋଇଛି ବୋଲି ତାଙ୍କର ଗଦ୍ୟ ସାହିତ୍ୟର ମନୋରମତା ମୋ ମର୍ମକୁ ସ୍ପର୍ଶ କରି ନାହିଁ । ଉତ୍କଳର ଅଶିକ୍ଷିତ ନାରୀ-ସମାଜ ଉପରେ ତାଙ୍କର ଉପନ୍ୟାସମାନଙ୍କର ପ୍ରଭାବକୁ ଏଡ଼ିବାରସାଧ କାହାର ନାହିଁ । ଶିକ୍ଷିତ ନରସମାଜ ଉପରେ ମଧ୍ୟ ତାଙ୍କ ପ୍ରବନ୍ଧର ଓ ଗଦ୍ୟର ପ୍ରଭାବ ପଡ଼ିଥିଲା ଏବଂ ଯେତେଦିନ ପର୍ଯ୍ୟନ୍ତ ଜନସମାଜର ଆଭ୍ୟନ୍ତରୀଣ ଉନ୍ନତି ନ ଘଟିଛି ଓ ସାମାଜିକ ବାତାବରଣ ପୂର୍ଣ୍ଣ ପରିବର୍ତ୍ତିତ ନ ହୋଇଛି, ସେତେ ଦିନଯାଏ ତାଙ୍କ ଉପନ୍ୟାସର ପ୍ରଭାବ ମଧ୍ୟ ପଡ଼ିବ; କାରଣ, ଉପନ୍ୟାସ ବା ଗଦ୍ୟ ସାହିତ୍ୟ ସବୁ ଦେଶରେ, ସବୁକାଳରେ, 'ବର୍ତ୍ତମାନ ସମାଜ'ର ମାନସିକତାକୁ ଲକ୍ଷିତ କରାଇ ଦିଏ; ସୁତରାଂ ସାହିତ୍ୟ ମନୁଷ୍ୟର ତାତ୍କାଳିକ ଆଦର୍ଶର, ସମାଜର ଓ ମନୋବୃତ୍ତିର ଅନୁଗାମୀ ହେବାହିଁ ସ୍ୱାଭାବିକ ଦିଶେ ।

ଅବଶ୍ୟ ଉତ୍ତାଙ୍କ ଉପନ୍ୟାସରେ ଭାବଶିଳ୍ପୀ ଯେଉଁଠି ଉତ୍କଳ-ଭାରତୀଙ୍କ ଭଳି ଗାଉଛନ୍ତି :—

"ଜଗତ ଚିହ୍ନିବ କାହୁଁ ?
କାହୁଁ ବଳ ମୋର ?
ଚିହ୍ନି ଦେଇଥିଲ ମାତ୍ର ଦେହ ମନ ଦୁଇ
ତା 'ଥିଲ ମୋ' ସାଥେ
ନିଜକୁ ପାଶୋର ପ୍ରିୟା ପାଦତଳେ ।
ଆତ୍ମା ଢେବା ନ ଥିଲଟି ଲୋଡ଼ା,
ଆଗହୁଁ ସେ ମିଶିଥିଲା ତାର ଆତ୍ମା ସଙ୍ଗେ
ଜନ୍ମସୀମା ରେଖାଠାରୁ ବହୁଦୂରେ
ବିସ୍ମୃତ ଅତୁଳ ।
କେବେ ଭିନ୍ନେ ବହିଥିଲ ଧାରି ବେନି ଜୀବନର
କେ ଜାଣେ, କେ ଜାଣେ ?
ବିଚ୍ଛେଦରେ ସେହି ବିଷାଦ ମୁହୂର୍ତ୍ତେ,
ମେଳଣି ମାଗନ୍ତେ ଯହୁଁ ପଡ଼ିଥିଲ ଭାଙ୍ଗି
ଆତ୍ମା ଦୁଇ ! କେ ଜାଣେ ସେ କେଉଁ ଯୁଗରେ ?
ଢୋଇଥିଲ୍ଲି, ଛିନ୍ନ କରି କାଳ କରାଳ ନିୟମେ
ଚନ୍ଦ୍ର ଅଙ୍ଗୁ ଚନ୍ଦ୍ରିକା ଶୀତଳ,
ତଥାପି ମଙ୍ଗଳମୟ ସେ ବିଧାନ
ଉଜଳିଲ୍ଲି ଆଜି ଜଡ଼ପିଣ୍ଡ
ଅମୃତ ଆଲୋକେ ମମ ।
ମର୍ମ ବାଙ୍କଶାରେ ଯୋଖିଦେଲ ଅମୃତ ଯଟିଣୀ
କୁସୁମ ଉରସେ ଦେଲ ସିଞ୍ଚି ନୀହାର କଣିକା,
ସୁବାସେ ଦଗନ୍ତ ମୋହି ଚନ୍ଦନଘର୍ଷଣେ ଶୀଳାପଟେ ।"

ଯେଉଁଠାରେ ଉପର ଉକ୍ତ ଭାବକୁ ଉପନ୍ୟାସରେ, ଗଳ୍ପରେ ବା ପଦ୍ୟରେ ପ୍ରକାଶ କରିପାରିଛନ୍ତି, ସେହି Misticism ବା

'ସାହିତ୍ୟିକ ରହସ୍ୟବାଦ' ଯେଉଁ ଗଦ୍ୟର ବିଷୟବସ୍ତୁ ରୂପେ ପ୍ରତିଷ୍ଠିତ ହୋଇଛି, ସେହି ଗଦ୍ୟ କାବ୍ୟ ସଦୃଶ। ବର୍ଗସନ୍‌, ମେରୀ କରେଲି, ରୋଲାଣ୍ଡ, ଟଲଷ୍ଟୟ, ରବୀନ୍ଦ୍ରନାଥ, ଅରବିନ୍ଦ ପ୍ରଭୃତିଙ୍କର ଗଦ୍ୟ ସାହିତ୍ୟରେ ଏହିପରି ଭାବ ମନୁଷ୍ୟ-ଜୀବନର ଅନୁଭୂତି-ସୀମା ଭିତରେ ଅସୀମକୁ ଧରିବାର ପ୍ରୟାସ କରିଛି। ଏହା ସାମାନ୍ୟ ସାଧନାର କଥା ନୁହେଁ। ଉତ୍କଳ ଭାରତୀଙ୍କର ଗଦ୍ୟ ନିତାନ୍ତ ଗଦ୍ୟ—ଢଙ୍ଗରେ ଏହି ସୀମାତୀତକୁ ଧରିବା ଭଳି କୌଣସି ପ୍ରୟାସ ନାହିଁ ବୋଲି ଉଚ୍ଚକୋଟିର ସମଜଦାର ପାଠକଙ୍କୁ ତାହା ମଜ୍ଜିତ କରି ନିବିଡ଼ ଅନୁଭୂତିରେ ପହଞ୍ଚାଇପାରେ ନାହିଁ। ଏହି ଦିଗରୁ ତାଙ୍କର କୌଣସି ଗଦ୍ୟ ସାହିତ୍ୟ ମଠେ ମଣ୍ଡାଇପାରେ ନାହିଁ। ଅବଶ୍ୟ ଲୋକସାହିତ୍ୟ ହିସାବରେ ତାଙ୍କର ଗଦ୍ୟ ଉପନ୍ୟାସ ସାର୍ଥକ ହୋଇଛି। ସେ କବି; କବିତା ଯେମିତି ତାଙ୍କର ଜନ୍ମ। ଉତ୍କଳ-କଳକଣ୍ଠ ଭାରତୀ ରୂପେ ସେ କାବ୍ୟ-ଲୋକରେହିଁ ଚିରନ୍ତନ ପୂଜା ପାଇବେ। ତାଙ୍କର ପଦ୍ୟ ପଢିଲେ ଗଦ୍ୟକୁ ଆଲୋଚନା କରିବାକୁ ଇଚ୍ଛା ହୁଏ ନାହିଁ। କାରଣ, ତାହା ସ୍ୱତନ୍ତ୍ର ଭାବରେ ବିଚାର କରିବା ଯୁକ୍ତିଯୁକ୍ତ।

ଲେଖକଙ୍କ ବ୍ୟକ୍ତିଗତ ଜୀବନର ଦ୍ୱନ୍ଦ୍ୱ ତାଙ୍କ ଗଦ୍ୟ ସାହିତ୍ୟରେ ସ୍ପଷ୍ଟ ପ୍ରକାଶିତ ହୁଏ। ଆମ ନାରୀ କବିଙ୍କ ବ୍ୟକ୍ତିଗତ ଜୀବନ ଯେ କୁସୁମକୋମଳ ନ ଥିଲା, କବିତାର କୁଞ୍ଜରେ ଯେ ସେ ଅହରହ କାଳ ଯାପନ ନ କରି ଧୂଳିଧୂସରିତ ଝୁଡ଼ିଝିଙ୍କା ଜର୍ଜରିତ ମାଟିମଣ୍ଡପକୁ ଯେ ସେ ଓହ୍ଲାଇ ଆସି ଦ୍ୱନ୍ଦ୍ୱରେ ପଡ଼ିଥିଲେ, ଏହା ତାଙ୍କର ପ୍ରକାଶିତ ପ୍ରବନ୍ଧ ଓ ଉପନ୍ୟାସଚୟରୁ ସୁସ୍ପଷ୍ଟ ଜଣାପଡ଼େ। ସାଂସାରିକ ଓ ସାମାଜିକ ବେଷ୍ଟନୀ ତାଙ୍କ ଜୀବନ ଉପରେ ଗଭୀର ରେଖାପାତ

କରିଥିଲା । କବିଜୀବନର ଏହା ଗୋଟିଏ ମସ୍ତ ବଡ଼ ଶୋକଜନକ ପରିଣତି (tragedy) କୁନ୍ତଳା ଦେବୀ ଏଥିରୁ ମୁକ୍ତ ନଥିଲେ ।

ଓଡ଼ିଆସାହିତ୍ୟରେ ଭବିଷ୍ୟତ୍ କାଳରେ ଅନ୍ୟାନ୍ୟ ନାରୀ କବିଙ୍କ ପ୍ରତିଭା କୁନ୍ତଳାଙ୍କ କବିପ୍ରତିଭା ଉପରେ ଆରୋହଣ କରିପାରେ, କିନ୍ତୁ ବାସ୍ତବିକ ବର୍ତ୍ତମାନ କାଳରେ ଓଡ଼ିଆ ସାହିତ୍ୟକୁ ତାଙ୍କ ଅବଦାନ ଏତେ ପୂର୍ଣ୍ଣ ଯେ, ତାଙ୍କ ସହିତ ସମତୁଲ ହେବାକୁ ଏ ପର୍ଯ୍ୟନ୍ତ କୌଣସି ଓଡ଼ିଆର ଝିଅ ଉପଯୁକ୍ତା ହୋଇ ନାହାନ୍ତି; ହେବାର ସୂଚନା ମଧ୍ୟ ଦିଶୁ ନାହିଁ । ଏଥି ପାଇଁ ତାଙ୍କପ୍ରତି ଦେଶର ପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଚିରଦିନ ଅର୍ପିତ ହେଉଥିବ ।

ସ୍ଥୂଳତଃ କୁନ୍ତଳାକୁମାରୀଙ୍କ କାବ୍ୟସାହିତ୍ୟକୁ ତିନୋଟି ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମେ ତାଙ୍କ କବିତା ଭକ୍ତି-ରସାଶ୍ରୟୀ, ଦ୍ୱିତୀୟରେ ପ୍ରେମରସାଶ୍ରୟୀ, ତୃତୀୟରେ ବୀରରସାଶ୍ରୟୀ । ସମସ୍ତ କବିତାବଳୀରେ ଏହି ତିନୋଟି ଭାବକୁ ମୁଖ୍ୟ କରି ସେ କବିତା ରଚନା କରିଅଛନ୍ତି । ତିନୋଟି ମୁଖ୍ୟଭାବ ପରିପୁଷ୍ଟ, ପୂର୍ଣ୍ଣାଙ୍ଗ ହୋଇ ତାଙ୍କ ଦକ୍ଷ ତୂଳିରେ ଚିତ୍ରିତ ହୋଇଛି । ପାଠକ ଯେଉଁ ଭାବରେ କବିତା ପାଠ କରିବେ, ତାଙ୍କର ମନେହେବ ଯେ, କୁନ୍ତଳା ସେହି ଭାବରେ କୃତିତ୍ୱ ଦେଖାଇଅଛନ୍ତି; କେଉଁଠି କ୍ଷୁର୍ଣ୍ଣତା ଘଟି ନାହିଁ । ମୋର କିନ୍ତୁ ମନେ ହୁଏ, ଓଡ଼ିଆ ଭାରତୀଙ୍କ କବିତାରେ ପ୍ରେମପ୍ରବଣତା ବିଶେଷ ଭାବରେ ଫୁଟିଉଠିଛି । ସେ ପ୍ରେମରସର କବି; ଏହା ବୋଲି ତାଙ୍କ କବିତାବଳୀରେ ବୀରରସର ବା ଭକ୍ତି-ରସର ସୌନ୍ଦର୍ଯ୍ୟ ବା ପ୍ରାକୃତିକ ବର୍ଣ୍ଣନାର ଅପ୍ରଚୁରତା ରହିଛି ବୋଲି ମୁଁ କହୁ ନାହିଁ । ଏକଥା ସତ୍ୟ ଯେ, ତାଙ୍କ କବିତାରେ ତାଙ୍କ ବ୍ୟକ୍ତିତ୍ୱ ଫୁଟିବାର ଅବସର ବିଶେଷ ଭାବରେ ଘଟିଛି । ଓଡ଼ିଆ

ଭାରତୀୟ ସାହିତ୍ୟରେ ଅସିବାର ସୁଯୋଗ ଯେ ନ ପାଇଛନ୍ତି, ସେ ତାଙ୍କ କବିତାରୁ ସ୍ପଷ୍ଟ ବୁଝିବେ, ଲେଖିକାଙ୍କ ମାନସିକ ବୃତ୍ତି କଅଣ ଥିଲା ଓ ତାଙ୍କ ଭିତରେ କି ଆକାଂକ୍ଷା କି ଆଶା ଜାଗ୍ରତ ରହିଥିଲା । ରକ୍ତମାଂସର, କ୍ଷୁଧା ତୃଷ୍ଣାର ବେଦନାକୁ ତାଙ୍କ ଲେଖନୀ ଆମ୍ଭମାନଙ୍କ ଆଗରେ ଅତି ସୁସ୍ପଷ୍ଟ ସୁସଜ୍ଜ କରି ଧରିଛି । ଓଡ଼ିଶାର ପ୍ରାଚୀନ ଏବଂ ଆଧୁନିକ ବହୁ କବିଙ୍କ କାବ୍ୟ ଓ କବିତାଦିରେ ଦେଖାଯାଏ ଯେ, ସେମାନେ ଆତ୍ମପ୍ରକାଶ କରିବା ପାଇଁ ମନୁଷ୍ୟଜୀବନର ମୂଳଦୁଆ ଉପରେ ତାଙ୍କ ଆଖ୍ୟାନ ବସ୍ତୁ ଗଢ଼ିଛନ୍ତି ବା ଗୋଟିଏ ଗୋଟିଏ "ମିଡ଼ିୟମ୍" (ମଧ୍ୟସ୍ଥ) ସାହାଯ୍ୟରେ ତାହା ପ୍ରକାଶ କରିବାକୁ ପ୍ରବୃତ୍ତ ହୋଇଛନ୍ତି; ଯେପରି, ଆଧୁନିକ ରାଧାନାଥଙ୍କ ପାର୍ବତୀ, ଯଯାତି-କେଶରୀ, କେଦାରଗୌରୀ, ମହାଯାତ୍ରା ଆଦି କାବ୍ୟ; ଯେପରି ଚନ୍ଦ୍ରମଣି ମହାନ୍ତି, ଗଙ୍ଗାଧର ମେହେର ପ୍ରାଚୀନ ସଦାନନ୍ଦ କବିସୂର୍ଯ୍ୟ-ବ୍ରହ୍ମା, ଅଭିମନ୍ୟୁ ସାମନ୍ତସିଂହାର ଓ ଭଞ୍ଜଙ୍କ କାବ୍ୟକବିତା ଆଦିରେ ଦେଖାଯାଏ । ଅବଶ୍ୟ ଆଧୁନିକ ଲେଖକମାନଙ୍କଠାରେ ସଚରାଚର ଏପରି ଢଙ୍ଗର କାବ୍ୟସାହିତ୍ୟର ନିଦର୍ଶନ ଦେଖିବାକୁ ମିଳେନାହିଁ । କୁନ୍ତଳାକୁମାରୀଙ୍କର ପ୍ରେମଚିନ୍ତାମଣି ସେହିପରି ଏକ ଲଳିତ କବିତା ପୁସ୍ତକ, ଯହିଁରେ କି ନାରୀକବି ଚିରାଚରିତ ପୂର୍ବକ କବିମାନଙ୍କର ଲିଖନ ପଦ୍ଧତି ଓ ରୀତି ଅନୁସାରେ କୌଣସି ଆଖ୍ୟାନବସ୍ତୁ ମଧ୍ୟସ୍ଥ (plot ବା medium)ର ସାହାଯ୍ୟ ନ ନେଇ ନିଜେ ନିଜର ସତ୍ୟ ଅନୁଭୂତିକୁ ସହଜର ପୂଜାହାରିଣୀ ଭାବରେ ପ୍ରକାଶ କରିଛନ୍ତି । ତାଙ୍କର ଅକୁଣ୍ଠିତ ପ୍ରକାଶ ଭଙ୍ଗୀରେ ପାଠକେ ମୁଗ୍ଧ ହେବେ ଓ ସେ ଯେ ବାସ୍ତବିକ ସତ୍ୟ ଶିବ ଓ ସୁନ୍ଦରଙ୍କର ଭକ୍ତ ଓ ପୂଜାହାରି-ଣୀ ଏଥିରେ ଦ୍ୱିଧା ନାହିଁ । ନିଜର ସତ୍ୟ ଅନୁଭୂତିକୁ, ନିଜର ଚିନ୍ତାକୁ ସତେଜ ଭାବରେ ସାହସ ସହିତ ଏ ବିଷୟରେ ଏକା କବି-

ମାନେହିଁ ପ୍ରକାଶ କରିବାକୁ କ୍ଷମ ଅଟନ୍ତି । ଯଥାର୍ଥ କବିତ୍ୱ ଏଥିରୁ ଧରାପଡ଼େ । ଯେଉଁମାନେ କବିତ୍ୱ ଛଡ଼ା ଅନ୍ୟ କୌଣସି ପେଶାଦାର ସାହିତ୍ୟିକ, କବିଯଶଃପ୍ରାର୍ଥୀ ବା ରାଜନୀତିକ, ସେମାନଙ୍କ ସାହିତ୍ୟିକ ଅଭିବ୍ୟକ୍ତିରୁ ସେମାନଙ୍କ ବ୍ୟକ୍ତିତ୍ୱ ଭିନ୍ନ ଭାବରେ ବାରିହୋଇପଡ଼େ । କାରଣ ପ୍ରକୃତକବିଙ୍କ ଆତ୍ମପ୍ରକାଶର ସହଜ ଭଙ୍ଗୀ ଓ ସାହସ ସେମାନଙ୍କର ନ ଥାଏ । ସବୁବେଳେ ପ୍ରାୟ ସେମାନଙ୍କର ଲକ୍ଷ୍ୟ ରହେ ନିଜର ସାହିତ୍ୟିକ ଅବଦାନର ଲୋକପ୍ରିୟତା, ଶସ୍ତାରେ ମିଳିବା ପ୍ରଶଂସା ଓ ବଜାରକାଟ୍ତି ଉପରେ । ଏହି କେତୋଟି ଲକ୍ଷ୍ୟ କୁନ୍ତଳାକୁମାରୀଙ୍କର ଲେଖା ପାଠକଲେ ଜଣାଯାଏ ନାହିଁ । ସେ ସ୍ୱଭାବକବି ଥିଲେ; ନିଜର ଅନ୍ତରର ନିଗୂଢ ଭାବ ପ୍ରକାଶର ଆନନ୍ଦରେ ସେ ଗୀତ ଗାଇଛନ୍ତି । ଭବିଷ୍ୟତ୍ ସମାଲୋଚକଙ୍କ ଚକ୍ଷୁରେ ତାଙ୍କ କାବ୍ୟକବିତାର ବିଚାର କିପରି ହେବ, ତାହା କିପରି ଭାବରେ ବିଶ୍ଳେଷିତ ହେବ, ଏହି ଦିଗକୁ ସେ ଆଦୌ ନଜର ଦେଇ ନ ଥିଲେ । ଏଇଥିରୁ ତାଙ୍କର ଖାଣ୍ଟି କବିପଣ ଧରାପଡୁଛି । ସେ "ନିଜ କଥା"ରେ ସେହି ମନୋଭାବର, ସେହି ସାହସର ସୂଚନା ଦେଇଛନ୍ତି । ଏହିଠାରେ କବିଙ୍କ ଉଦ୍ଦେଶ୍ୟରେ ଅନ୍ତରର ଶ୍ରଦ୍ଧାର ଉତ୍ସ ଝରିପଡ଼େ; କହିବାକୁ ଇଚ୍ଛାହୁଏ :—'ହେ ନିଃସର୍ଗ ନାରୀକବି ! ଯେଉଁ କଳ୍ପନାଲୋକର ଅଳକା ପୁରୀରେ ବାସ କରୁଛ, ସେଠାରେ ସ୍ୱର୍ଗର ଦେବତାଗଣ ତୁମ୍ଭ ମସ୍ତକରେ ପାରିଜାତଧାରା ବର୍ଷଣ କରନ୍ତୁ ।'

ଉତ୍କଳ ଭାରତୀଙ୍କର ନାୟକ ନାୟିକାଙ୍କ ବିଚାର କରିବା ଏହି ପ୍ରବନ୍ଧର ମୂଳଗତ ଉଦ୍ଦେଶ୍ୟ ନ ଥିଲେହେଁ, ଏଠାରେ, କହୁଛନ୍ତି ଯେ ତାଙ୍କ ରଚନାର ହୃଦୟଗ୍ରାହିତା କେତେ ଏବଂ ଲେଖିକାଙ୍କର

ରସବୋଧ ଓ ରଚନାଚାତୁର୍ଯ୍ୟ ଉପରେ ତାଙ୍କର ଭାବସମ୍ପଦକୁ ମହନୀୟ ଓ ବରେଣ୍ୟ କରିପାରିଅଛି, ଏହା ପାଠକ ପାଠିକାବର୍ଗ ତାଙ୍କର କବିତାବଳୀ ପାଠ କଲେ ଉତ୍ତମ ରୂପେ ହୃଦୟଙ୍ଗମ କରିପାରିବେ । ଅଧିକ ଲେଖି ଆପଣମାନଙ୍କ ଧୈର୍ଯ୍ୟ ନଷ୍ଟ କରିବାକୁ ମୁଁ ସାହସ କରୁ ନାହିଁ ।

ଏଡ଼େ ବଡ଼ ବ୍ୟକ୍ତିଙ୍କ ବ୍ୟକ୍ତିଗତ ଜୀବନ କିପରି ଭାବରେ କଟିଥିଲା, ତାହା ଜାଣିବା ପାଇଁ ବୋଧ ହୁଏ ଅନେକେ ଆଗ୍ରହାନ୍ୱିତ ହେଉଥିବେ, କିନ୍ତୁ ଏହି କ୍ଷେତ୍ରରେ ସେ ସମସ୍ତର ବର୍ଣ୍ଣନା ମୋ ପକ୍ଷରେ ସୁନ୍ଦର ହେବ ନାହିଁ । ତେବେ ମୋତେ ଏତିକି ଦିଶୁଛି ଯେ, ତାଙ୍କ ଜୀବନକୁ ଯେଉଁପରି ଭାବରେ ପରିଚାଳିତ କରିବେ ବୋଲି ପ୍ରଥମେ ସେ କଳ୍ପନା କରିଥିଲେ, ସେହି କାର୍ଯ୍ୟରେ ପରିଣତ ହୋଇପାରି ନ ଥିଲା । ତାଙ୍କର କାବ୍ୟ, କବିତା, ଉପନ୍ୟାସ, ପ୍ରବନ୍ଧାଦିରେ ସ୍ଥାନେ ସ୍ଥାନେ ତାଙ୍କ ଜୀବନର କେତେକ ପ୍ରତିଛବି ପ୍ରତିଫଳିତ ହୋଇଥିଲା ପରି ଜଣାପଡ଼େ । ଆଂଶିକ ବ୍ୟର୍ଥତାର ବିଷାଦକାଳିମା ତାଙ୍କ ଜୀବନକୁ କେତେକ ପରିମାଣରେ ଆବୃତ କରିଦେଇ ଥିଲାପରି ଜଣାଯାଏ । ଆଦର୍ଶ ଜୀବନ ଯାପନ କରିବେ ବୋଲି ନିଜର ଜୀବନକୁ ନିଜର କଳ୍ପନାର ସମନ୍ୱୟ କରି ଗଢ଼ିଳିତ କରିବେ ବୋଲି ସେ ଖ୍ରୀଷ୍ଟାନ୍ ସମାଜ ସହିତ ବିଦ୍ରୋହ କରି ଧର୍ମାନ୍ତର ଗ୍ରହଣ କରିବାକୁ କୁଣ୍ଠା ବୋଧ କରି ନ ଥିଲେ । କିନ୍ତୁ ସେ ଉକ୍ତ ଲକ୍ଷ୍ୟ ସାଧନରେ କେତେ ଦୂର ସଫଳକାମ ହୋଇଥିଲେ, ତାହା ଭବିଷ୍ୟତ ଐତିହାସିକ ଲିପିବଦ୍ଧ କରିବେ ।

# ଉପସଂହାର

ଉତ୍କଳ ଭାରତୀ କୁନ୍ତଳା ଯଥାର୍ଥରେ ଉତ୍କଳର ସାରସ୍ୱତ ପ୍ରତିଭାର ପ୍ରତୀକ ଥିଲେ । ଉତ୍କଳର ଆତ୍ମା ତାଙ୍କର ସତ୍ତାରେ ବାଣୀ ରୂପ ଗ୍ରହଣ କରି ଭାବ ଓ ଅନୁପମ ଭାଷାରେ ବଙ୍କୃତ ହୋଇ ଥିଲା । କାବ୍ୟଲୋକର ବାତାୟନ ଜାଲ ରହସ୍ୟାବୃତ ନ ଥିଲା ବୋଲି ତାଙ୍କର ହୃଦୟର ବୀଣାଲତା ପାଠକଟିଓ ଜାଳନାକରି ପାରୁଥିଲା । ସେହି କାରଣରୁ ମନରେ ମୋର କବିଙ୍କ ପ୍ରତି ସମ୍ଭ୍ରମ ଓ ଶ୍ରଦ୍ଧା ଉଚ୍ଛୁଳି ପଡ଼ୁଥିଲା—ପରିଚୟ ପୂର୍ବରୁ !

ଯେଉଁ ମାହେନ୍ଦ୍ରକ୍ଷଣରେ ତାଙ୍କୁ ଭେଟିଲି, ସେହି ସ୍ମୃତି ଅଭୁଲା ସଙ୍ଗୀତ ରୂପେ ମନରେ ବଞ୍ଚିଛି । ସେ ସାଧାରଣ ନାରୀ ନ ଥିଲେ । ତାଙ୍କର ମହାନ୍ ଶକ୍ତି ଉତ୍କଳୀୟଙ୍କ ଜୀବନରେ ମୃତ-ସଞ୍ଜୀବନୀ ପରିଣି ଥିଲା । ସେ ଯେଉଁ କାବ୍ୟକୁଞ୍ଜ ରଚିଥିଲେ ତାହା କାହାର ଅବସର ବିନୋଦନ ସାମଗ୍ରୀ ରୂପେ ପରିଗଣିତ ହେଉ ନ ଥିଲା । ତାଙ୍କ କବିତା ଏକ ବିରାଟ ଆଦର୍ଶ ଚିନ୍ତା ପ୍ରବାହର ସ୍ରୋତସ୍ୱିନୀ ହୋଇଥିଲା ଏବଂ ସେହି କବିତା ଥିଲା ମନୁଷ୍ୟ ପ୍ରାଣର ଏକ ବିଚିତ୍ର ରସାୟନ । ଏପରି ମଧୁର ସରସ ମର୍ମସ୍ପର୍ଶୀ କବିତା ଉତ୍କଳରେ ତାଙ୍କ କାଳରେ କେହି ଲେଖି ନାହାନ୍ତି ବୋଲି ସେହି ପରମ୍ପରା ପଥକୁ ଉତ୍ତର କାଳରେ କେଉଁ ନାରୀ କବି ଅତିକ୍ରମ କରିପାରି ନଥିଲେ । ତେଣୁ ସେ ଯେ କେବଳ ଜାତୀୟ ଚିନ୍ତାଧାରା ଦ୍ୱାରା କାବ୍ୟ କବିତାକୁ ପରିପୁଷ୍ଟ କରିଥିଲେ ତାହା ନୁହେଁ, ସେ ବିଂଶ ଶତାବ୍ଦୀର ଏକ ଯୁଗାନ୍ତକାରୀ କବି ବା ଯୁଗ-

କବି । ତାଙ୍କ ରଚନା ଗ୍ରାମ୍ୟଭାଷା ଦ୍ୱାରା ଲିଖିତ ହୋଇ ନ ଥିଲା କିମ୍ବା କେବଳ ବସ୍ତୁବାଦ ଉପରେ ତାର ଅବୟବ ବା ପ୍ରାଣଶକ୍ତି ପୁଷ୍ଟ ହୋଇ ନ ଥିଲା । ତାଙ୍କ ରଚନା ଥିଲା ବର୍ଣ୍ଣାଢ୍ୟ—ଭାଷା ଥିଲା ଉନ୍ନତ ଏବଂ ଭାବର ଆଭିଜାତ୍ୟ ଉପରେ ସେହି କବିତା ପ୍ରାଣ ରସରେ ଜୀବନ୍ୟାସ ପାଇଥିଲା । ଅଥଚ କ୍ଲିଷ୍ଟ ଶବ୍ଦ ସମ୍ଭାର ଓ କଷ୍ଟ କଳ୍ପନା ଦ୍ୱାରା ତାଙ୍କର କଳ୍ପନା ଜଡ଼ ହୋଇ ନ ଥିଲା । ପ୍ରାଣର ଗତି, ଭାବର ସାବଲୀଳ ବେଗ, ଆତ୍ମାର ପ୍ରବୁଦ୍ଧ ସ୍ପନ୍ଦନ ଓ ଚୈତନ୍ୟର ସଂକେତ ସେହି ରଚନା ବହନ କରୁଥିଲା । ମନୁଷ୍ୟ ପ୍ରାଣରେ ସଙ୍ଗୀତ ଧ୍ୱନି ଆରୋହଣ ଅବରୋହଣ ଗତି କଲା ପରି କୁନ୍ତଳାଙ୍କ ସଙ୍ଗୀତ କବିତାର ଛନ୍ଦ ସୁଖ, ଦୁଃଖ, ପ୍ରୀତି, ଭକ୍ତି ରସ, ପରିହାସରେ ବହୁମୁଖୀ କଳ୍ପନା ବିଳାସର ପରିକ୍ରମା କରେ । ବାସ୍ତବ କଠିନ ଭିତ୍ତିରେ ସେହି ଅସାଧାରଣ ଉନ୍ନତ ଅତୁଳ କାବ୍ୟର ପ୍ରତିବିମ୍ବ ପଡ଼େନାହିଁ ।

କବି ଉତ୍କଳର ପ୍ରଥମ ଔପନ୍ୟାସିକା ଥିଲେ । ତେଣୁ "ନଅଭୁଣୀ" "ପରଶମଣି" "ଭ୍ରାନ୍ତି" "ରଘୁଅରକ୍ଷିତ" "କାଳୀ ବୋହୂ" ପ୍ରଭୃତି ଉପନ୍ୟାସରେ ସେ ଯେପରି ଢଙ୍ଗରେ ଘଟଣା ପରିବେଶର ସମ ବିକାଶ କରାଇ ନାୟକ ନାୟିକାଙ୍କ ଚରିତ୍ର ଅଙ୍କନ କରିଛନ୍ତି ତାହାର ପରମ୍ପରାକୁ ମଧ୍ୟ କେଉଁ ନାରୀ ସେ ଯୁଗରେ ବା ଏଯୁଗରେ ଅତିକ୍ରମ କରିପାରି ନାହାନ୍ତି । ସେ ଅତୀତ କାଳର ସାମାଜିକ ପରିବେଶ ଉପରେ ଓଡ଼ିଆଙ୍କ ଜୀବନଚରିତ୍ର ଲେଖିଗଲେ । ସେହି ଅତୀତର ସାମାଜିକ ପରିବେଶ ବଦଳି ନାହିଁ । –"କାଳବୋହୂ" ଦେଖିଲେ ଦେଖଟାହାର ଏବେବି ବୋହୂକୁ ନାକ ଟେକନ୍ତି । ସେଇ ନାକଟେକା ପର୍ଦା ପଛରେ ରହିଯାଏ ବୋହୂର ଗୁଣ । ତେଣୁ

ତାଙ୍କ ସାହିତ୍ୟ ଏବେ ବି ଓଡ଼ିଆ "ଘର ସାହିତ୍ୟ" ହୋଇ ଘରେ ପରିବାରରେ ରହିଛି । ଦେଶରେ ନୂତନ ସମାଜ ଓ ଦେଶର ଭାଗ୍ୟ ବଦଳିଲା ପରେ ମଧ୍ୟ କୁନ୍ତଳାଙ୍କ କଥାସାହିତ୍ୟ ବଞ୍ଚି ରହିବ — ଉତ୍କଳର କଥାବହନ କରି । ପଦ୍ୟ ଗଦ୍ୟ ତାଙ୍କର ଚିରନ୍ତନ ସାହିତ୍ୟ ଶ୍ରେଣୀରେ ରହିବା ସ୍ୱାଭାବିକ । କୁନ୍ତଳା ବାହାରେ ଔପନ୍ୟାସିକ ବୋଲି ପରିଚିତ ନୁହଁନ୍ତି ବରଂ କାବ୍ୟ କୁଞ୍ଜର କୋକିଳ କବି ରୂପରେ ସେ ବହୁ ପରିଚିତ ହୋଇଥିଲେ ବୋଲି ଉତ୍କଳ ଭାରତୀ" ନାମରେ ନାମିତା ହୋଇଥିଲେ । ସେ ସାର୍ଥକ ନାମା କବି ଅଟନ୍ତି ।

ତାଙ୍କର ଉପନ୍ୟାସ ଭାବ ଓ ଭାଷା ଏତେ ସରଳ ଓ ସହଜ ବୋଧ ଯେ ତାହା ନିରକ୍ଷର ଲୋକ ମଧ୍ୟ ବୁଝିପାରିବ । କଥା ସାହିତ୍ୟରେ ଗଳ୍ପ ଓ ଉପନ୍ୟାସରେ ବ୍ୟାସକବି ଫକୀର ମୋହନ ଏବଂ ଭାଷାର ଯାଦୁକର ଶ୍ରୀ ଗୋପାଳ ପ୍ରହରାଜଙ୍କ ପରମ୍ପରା ବା "ଘରାନା" ର ସମୀକ୍ଷା କରିଥିଲେ କୁନ୍ତଳା କୁମାରୀ । ସେହି ପରମ୍ପରାକୁହିଁ ଔପନ୍ୟାସିକା ଗ୍ରହଣ କରିଥିଲେ । ସେକାଳରେ ବଙ୍ଗଳା "ଛାୟା" ବା "କାୟା" ଏକାଳ ଲେଖକ ଲେଖିକାଙ୍କ ଭଳି ଲେଖନୀକୁ ଆକ୍ରମଣ କରି ନ ଥିଲା । ତେଣୁ କୁନ୍ତଳାଙ୍କ କଥାସାହିତ୍ୟ ଉଭୂତ ଥିଲା ଖାଣ୍ଟି ଓଡ଼ିଆ ସାହିତ୍ୟ ହୋଇ । ସେ ଉପନ୍ୟାସର ପରିବେଶ ସୃଷ୍ଟି କରିଥିଲେ ଗାଁଗହଳିକୁ ନେଇ । ତାଙ୍କର ପାରିପାର୍ଶ୍ୱିକ ଆଙ୍ଗିକ ରଚିତ ହୋଇ-ଥିଲା ସମାଜର ମଧ୍ୟବିତ୍ତ ଓ ନିମ୍ନବିତ୍ତ ଶ୍ରେଣୀର ଲୋକଙ୍କ ଜୀବନ ରସରୁ । ତହିଁରେ ସେ ଯେଉଁ ମତବାଦ ପ୍ରୟୋଗ କରିଥିଲେ ତହିଁରେ ସାଧାସିଧା ହିନ୍ଦୁ ଘରର ପରମ୍ପରା ଯୁକ୍ତି ଓ ବିଶ୍ୱର

ପଦ୍ଧତି ରକ୍ଷା କରି ଯାଇଥିଲା । ତାଙ୍କର ନୈତିକ ବିଚାରର ମାନଦଣ୍ଡ ଆଧୁନିକ ମତ ଓ ମନୋବିଜ୍ଞାନର ସୀମା ସ୍ପର୍ଶ କରି ନ ଥିଲା ବୋଲି ସେ ନାୟକ ନାୟିକାମାନଙ୍କୁ କମ୍ପିତ କମାକାର ରୂପରେ ଚିତ୍ରିତ ଦେଇ ନାହାନ୍ତି । ନିଜେ ପ୍ରଗତିଶୀଳା ଆଧୁନିକା ହୋଇ ଏବଂ ଖ୍ରୀଷ୍ଟାନ କୁଳରେ ବଢ଼ି ସେ କିପରି ଆମ ସମାଜର ଚିନ୍ତା ଓ କର୍ମ ଧାରା ସହିତ ଏତେ ନିବିଡ଼ ଭାବରେ ଆପଣାକୁ ଗୁନ୍ଥି ଦେଇ ଆତ୍ମ ପ୍ରକାଶ କଲେ ଗୋଟିଏ ନୂଆ ପରମ୍ପରା ଓ ସଂସ୍କୃତି ସହିତରେ, ତାହାହିଁ ଆଶ୍ଚର୍ଯ୍ୟ ବୋଧ ହୁଏ । ବିଶିଷ୍ଟ ପ୍ରତିଭା ନ ଥିଲେ ଏହା ସମ୍ଭବ ନୁହେଁ । ଜଣେ ଓଡ଼ିଆ ଲେଖକ ମହାରାଷ୍ଟ୍ରୀ ବା ଶିଖ ବା ଗୁଜୁରାଟି ଅବା ତେଲେଙ୍ଗି ସଂସ୍କୃତି କିମ୍ବା ସଭ୍ୟତା ବିଚାର ଧାରାକୁ ନିଜ ରଚନାରେ ଅଙ୍କେଇ ନେବା ସହଜ କଥା ନୁହେଁ ।

କୁନ୍ତଳା କୁମାରୀଙ୍କର ସୂକ୍ଷ୍ମଦୃଷ୍ଟି ଓ ଅନୁଭୂତିରେ ତାଙ୍କ କଥାସାହିତ୍ୟ ସୃଷ୍ଟି ଲାଭ କରି ସେଯୁଗରେ ଶତ ଶତ ପାଠକ ପାଠିକାଙ୍କୁ ଆନନ୍ଦରେ ଅନୁପ୍ରାଣିତ କରିଥିଲା । ତାଙ୍କର ଗଦ୍ୟଭାଷା ଓ ଭାବ ମଧ୍ୟ ତେଜସ୍କର ଥିଲା । କବିତା ଓ ପ୍ରବନ୍ଧ, ଉପନ୍ୟାସରେ ତାଙ୍କର ବ୍ୟକ୍ତି-ତ୍ୱ ହିଁ ଫୁଟିଛି । ସେ ସମାଜର ଦେଶର ଅନ୍ୟାୟକାରୀ, ଅତ୍ୟାଚାରୀମାନଙ୍କ ବିରୁଦ୍ଧରେ ଉଦ୍ୟତାୟୁଧା ହୋଇଥିଲେ । କୁନ୍ତଳା କୁମାରୀ କଥାସାହିତ୍ୟକୁ ସେ ଯୁଗରେ ବଞ୍ଚାଇ ରଖିଥିଲେ । ଉପନ୍ୟାସରେ ସେ ନର ନାରୀଙ୍କୁ ସ୍ୱଭାବିକ ଓ ସତ୍‌ମାର୍ଗଗାମୀ ହେବାକୁ ନିର୍ଦ୍ଦେଶ ଦେଇଛନ୍ତି । ସେ ଯୁଗରେ କୁନ୍ତଳା ଶ୍ରେଷ୍ଠ ନାରୀ ଔପନ୍ୟାସିକା ଥିଲେ । କୁନ୍ତଳା ଏ ଯୁଗର ମଧ୍ୟ ଶ୍ରେଷ୍ଠତମା କବି ଅଟନ୍ତି । ଉପନ୍ୟାସ ରଚନାରେ ତାଙ୍କର ଶ୍ରେଷ୍ଠ କୃତିତ୍ୱ ଫୁଟିବାର

ଅବସର ପାଇ ନାହିଁ ସତ୍ୟ କିନ୍ତୁ କବିତା କାବ୍ୟ ସଙ୍ଗୀତ ଛନ୍ଦରେ ତାଙ୍କର ନିପୁଣତା ଅକ୍ଷୁଣ୍ଣ ରହିଅଛି । ଯେତେବେଳେ “ କୁନ୍ତଳାଙ୍କ କବିପ୍ରତିଭା” ପ୍ରଥମ ସଂସ୍କରଣ ଲେଖିଥିଲି ସେତେବେଳେ ତାଙ୍କର ଉପନ୍ୟାସ ସବୁ ପଢ଼ି ନଥିଲି । ଆମ ଦେଶର ଦୁର୍ଭାଗ୍ୟ । ପାରିବାରିକ କଦର୍ଥନା ହେତୁ ସାହିତ୍ୟକୁଟୀର ଏହି କଳକଣ୍ଠି କବି ଅକାଳରେ ଅସ୍ତମିତ ହେଲେ । ଉତ୍କଳ ଛଡ଼ା ଅନ୍ୟ ପ୍ରଦେଶ ହୋଇଥିଲେ କବିଙ୍କ କବିତାର ଯେଉଁ ମୂଲ୍ୟ ନିର୍ଦ୍ଧାରଣ ହୋଇଥାନ୍ତା ତାହା ଉତ୍କଳରେ ହୋଇ ପାରିଲା ନାହିଁ । ତାଙ୍କର ସ୍ମୃତିପୂଜା ଓଡ଼ିଆଜାତି କରିଥିଲେ କବିଙ୍କର ଅପ୍ରକାଶିତ ବହୁ ପାଣ୍ଡୁଲିପି କୀଟ ଖାଦ୍ୟରେ ପରିଣତ ହୋଇ ନ ଥାନ୍ତା । କୋଣାର୍କ ଦେଉଳରେ ମୂର୍ତ୍ତି ମରା ଯାଇ ନ ଥିଲା । ସୁତରାଂ ତାଙ୍କର ଗ୍ରନ୍ଥାବଳୀ ସଂପାଦିତ ହେଲା ନାହିଁ । ଏହା ଯେ କେବେ ସମ୍ଭବ ହେବ ତାହା ମୋର ବିଶ୍ୱାସ ହୁଏ ନାହିଁ । ଗୋପାଳ ପ୍ରହରାଜଙ୍କ ଅମର ଭାଷାକୋଷ ଯେପରି ଆଉ ମୁଦ୍ରିତ ହେବାର ସମ୍ଭାବନା ନାହିଁ, କୁନ୍ତଳା ଗ୍ରନ୍ଥାବଳୀ ସଂପାଦିତ ହେବାର ସେପରି ସମ୍ଭାବନା ସୁଦୂରେ ପରାହତ ।

କୁନ୍ତଳା ବଞ୍ଚିଥିଲେ ତାଙ୍କ ଲେଖମାରୁ ଜାତୀୟ ଭାବଧାରାର ସୁଧାକ୍ଷରଣ ହୋଇଥାନ୍ତା । ପୁଣି ବିଚ୍ଛିନ୍ନାଞ୍ଚଳ ଏକତ୍ରିକରଣ ପାଇଁ ସେ ଜାତିକୁ ଚେତନା ବାଣୀ ଶୁଣାଇ ଉତ୍କଳ ଜନମନକୁ ପୁଷ୍ଟାଙ୍ଗ କରିବାରେ ଆତ୍ମନିୟୋଗ କରି ଥାନ୍ତେ । ସେ ବିଦେଶରେ ଥିଲେ ବୋଲି ଜନ୍ମଭୂମି ଓଡ଼ିଶା ପ୍ରତି ତାଙ୍କର ଗଭୀର ମମତା ଥିଲା । ଦୂର ବନ୍ଧୁ ସୁନ୍ଦର ଦିଶେ । ବିଦେଶରେ ଥିଲେ ମନୁଷ୍ୟକୁ ଜନ୍ମ-ଭୂମିର ମାୟା ଟାଣେ । କଲିକତା ଦିଲ୍ଲୀ ବିହାର ଆସାମରେ ଓଡ଼ିଆ

ଶ୍ରମିକମାନଙ୍କ ଦୁର୍ଦ୍ଦଶାର କାରଣ ସେ ବୁଝୁଥିଲେ । ସେଥିପାଇଁ ସମଗ୍ର ଓଡ଼ିଆଭାଷୀ ଲୋକେ ଏକ ଶାସନାଧିନରେ ରହି ଅର୍ଥ ସଂସ୍କୃତି ସଭ୍ୟତା ସାହିତ୍ୟ ଗୀତରେ ଓଡ଼ିଶା ଭାରତବର୍ଷରେ ଗୋଟିଏ ବଳିଷ୍ଠ ଜାତି ଭାବରେ ଛିଡ଼ା ହେବାର ସ୍ୱପ୍ନ ସେ ଦିଲ୍ଲୀରେ ଥାଇ ଦେଖୁ ଥିଲେ । ଆଜି ଲୋକ ନିଜ ଦେଶକୁ ବାହାରେ ବଡ଼ କରି ନ ଦେଖାଇଲେ ନ ଥୋଇଲେ ଆମ ଓଡ଼ିଆମାନଙ୍କୁ ସବୁ ଜାତି ଅବହେଳା କରିବେ ଓ ଘୃଣା କରିବେ ଏହି ଭାବ ତାଙ୍କ ମନକୁ ଭାରାକ୍ରାନ୍ତ ରଖିଥିଲା । ସିଂହଭୂମି-ଖରସୁଆଁ ଓଡ଼ିଶାରୁ ଅଲଗା ରହିଲା । ଆନ୍ଧ୍ର ଦେଶରେ ମଧ୍ୟପ୍ରଦେଶରେ ବିହାରରେ ଓଡ଼ିଆ ଜାତିଙ୍କ ସତ୍ତା ଲୋପ ପାଇଲା । ଭାରତ ମହାସାଗରରେ ବଙ୍ଗୋପସାଗର ସତ୍ତା ହରାଇଲା । ଏଥିପାଇଁ ତାଙ୍କର ଚକ୍ଷୁ ଅଶ୍ରୁଳ ହୋଇଥାନ୍ତା—ଜାତିପ୍ରତି ଚରିତ୍ରରେ ଲୋଭ, ସ୍ୱାର୍ଥ, ଆତ୍ମକେନ୍ଦ୍ରିକତାର ସଙ୍କୀର୍ଣ୍ଣତା ଦେଖି । ଏହି ଜାତିପ୍ରତି ଚରିତ୍ରର ଅମାର୍ଜନୀୟ ଦୌର୍ବଲ୍ୟ ଓ ଅଧଃ ପତନକୁ ଉତ୍କଳ ଭାରତୀ କ୍ଷମା କରି ପାରି ନ ଥାନ୍ତେ । କବିତାରେ ତାଙ୍କର ଅଶ୍ରୁ ବୁହାଇ ଥାନ୍ତେ ।

ସେ ଯେ କେବଳ କବି ଥିଲେ ତାହା ନୁହେଁ, କବି ଏକାଧାରରେ ବାଗ୍ମୀ ଓ କର୍ମୀ ଥିଲେ । ସେ ନିରଳସ ଭାବରେ ଦରିଦ୍ରର ସେବା କରୁଥିଲେ । ବିନା ପାରିଶ୍ରମିକରେ ଔଷଧ ବିତରଣ ଓ ଚିକିତ୍ସା କରି ସାମାଜିକ ସେବା ଓ ଲୋକ ଉପକାର କରୁଥିଲେ । ହିନ୍ଦିରେ ତାଙ୍କର ଭାଷଣ ଥିଲା ଚମତ୍କାର । ତାହା ପଶ୍ଚିମ ଉତ୍ତରାଞ୍ଚଳରେ ଲୋକ ମୁଖରେ ପ୍ରଶଂସିତ ହେଉଥିଲା ।

ସେ ଧର୍ମାନ୍ତର ଗ୍ରହଣ କରି ହିନ୍ଦୁ, ଇସଲାମ, ପୁରାଣ, ଶାସ୍ତ୍ରର ବହୁ ଗବେଷଣା କରୁଥିଲେ । ତାଙ୍କର ଧର୍ମାନ୍ତର ଗ୍ରହଣରେ

ମନର ଢାଞ୍ଚା ବଦଳିଯାଇଥିଲା । 'ସହକାର' ପତ୍ରିକାରେ ଦିଲ୍ଲୀ ଠାରୁ ତାହା ଜଣାପଡ଼େ । ଇଂରାଜୀରେ ସେ ତାଙ୍କ ନିଜ କବିତାକୁ ଅନୁବାଦ କରି ଲଣ୍ଡନରେ ଛାପିବାର କଳ୍ପନା କରିଥିଲେ ଏବଂ ସେ ବଞ୍ଚିଥିଲେ ଜଣେ ବିଶ୍ୱବରେଣ୍ୟା କବି ରୂପରେ ପୃଥିବୀରେ ପରିଚିତ ହୋଇ ପାରିଥାନ୍ତେ ।

ସେ ହିନ୍ଦୁ ବ୍ରାହ୍ମଣ କୁଳରେ ଜନ୍ମ ଥିଲେ —ପୁରୀ ଜିଲ୍ଲାରେ ତାଙ୍କ ବାପଘର ଥିଲା—ଖୋର୍ଦ୍ଧା ଅଞ୍ଚଳରେ । ତାଙ୍କ ଅଜା ଖ୍ରୀଷ୍ଟାନ ହୋଇଥିଲେ । ତାଙ୍କ ବାପା ବ୍ରହ୍ମଦେଶରେ ଡାକ୍ତର ଥିଲେ । ତେଣୁ କବିଙ୍କର ବାଲ୍ୟକାଳ ବିତିଥିଲା ବ୍ରହ୍ମଦେଶର ଜଳବାୟୁରେ । ସେ ନାରୀ ସ୍ୱାତନ୍ତ୍ର୍ୟ ପ୍ରଗତି ଓ ଶିକ୍ଷା ଦୀକ୍ଷାର ଆଲୋକ ପାଇଥିଲେ ବ୍ରହ୍ମଦେଶୀୟ ସମାଜରୁ । କର୍ମ, ଶିକ୍ଷା, ସଭ୍ୟତା, ସ୍ୱାବଲମ୍ବନ ଶୀଳତା ତାଙ୍କ ଚରିତ୍ରକୁ ଆସିଥିଲା ସେହି ଦେଶର ମୁକ୍ତ ନାରୀ ଜୀବନର ସଂସ୍ପର୍ଶରେ । ତେଣୁ ସେ ଖୁବ୍ ତେଜସ୍ୱିନୀ ପ୍ରକୃତିର ନାରୀ ଥିଲେ ।

ବିବାହ ତାଙ୍କ ଜୀବନରେ ଧୂମକେତୁକୁ ଆମନ୍ତ୍ରଣ କରିଥିଲା । ସେ ଷଡଯନ୍ତ୍ରର ଶୀକାର ହୋଇ ଦିଲ୍ଲୀ ଯାଇଥିଲେ ସଂସ୍କୃତ ପଢ଼ିବାକୁ । ସେଠାରେ ଭାରତର ସବୁ ପ୍ରଦେଶର ବିଧବା ସଂଗ୍ରହ କରାଯାଇ ଆର୍ଯ୍ୟପଦ୍ଧତିରେ ବିବାହ କରାଇ ଦିଆ ଯାଉଥିଲା । "ଆର୍ଯ୍ୟ-ସମାଜର" ଏହି ସଂସ୍ଥାରେ କୁନ୍ତଳାଙ୍କର ପ୍ରବେଶ ଘଟିଥିଲା । ସେ ମଧ୍ୟ ବନ୍ଦୀଖାନା ଭିତରରେ ପଡ଼ି ବିବାହ କଲେ ମାତ୍ର ସଂସ୍କୃତ ପଢ଼ି ପାରିଲେ ନାହିଁ ।

ତାଙ୍କର ତିନୋଟି ସନ୍ତାନ ହୋଇଥିଲେ । ପ୍ରଥମ କନ୍ୟା ସବିତା, ପୁତ୍ର ଜଗନ୍ନାଥ ଏବଂ ଶେଷକନ୍ୟା ଜନ୍ମହେଲା ପରେ ସେ

ସ୍ୱାମୀଙ୍କର ଭ୍ରମ ଜନିତ କାରଣରୁ ପ୍ରାଣତ୍ୟାଗ କଲେ । ତାଙ୍କର ସ୍ୱାମୀ-ଶ୍ରୀ କୃଷ୍ଣ ପ୍ରସାଦ ଦାସ (ବନ୍ଧୁବୃନ୍ଦ) ଏକ କମ୍ପାଉଣ୍ଡର ଥିଲେ ଓ କବିଙ୍କ ସ୍ୱାମୀ ହେବାପାଇଁ ଅଯୋଗ୍ୟ ବ୍ୟକ୍ତି ଥିଲେ । ଏହି ଅଯୋଗ୍ୟ ସ୍ୱାମୀ ଗ୍ରହଣ କରି ନ ଥିଲେ କବିଙ୍କ ଜୀବନର ଏପରି ଦୁର୍ଦ୍ଦଶା ହୋଇ ଶୋଚନୀୟ ପରିଣାମ ହୋଇ ନ ଥାନ୍ତା । କବି ଓଡ଼ିଶା ଓ ଓଡ଼ିଆ ଜାତିକୁ ଅତି ଭଲ ପାଉଥିଲେ ବୋଲି ସୁଦୂର ଦିଲ୍ଲୀରେ ରହି ନିଜ ଜାତିର ବଡଠାକୁର ଜଗନ୍ନାଥଙ୍କ ନାମରେ ପୁନର୍ନାମ-କରଣ କରି ଥିଲେ । ଓଡ଼ିଆ ଜାତିର ଐକ୍ୟ ରଖିବାକୁ ସେ ପ୍ରଥମେ ଜାଗା କିଣି ଦିଲ୍ଲୀଠାରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରି ଠାକୁରଙ୍କ ସେବା ଚଳାଇ ଥିଲେ । ଜଗନ୍ନାଥ ଓଡ଼ିଆଙ୍କ ଦେବତା । ଏହି ଦେବତାଙ୍କ ପ୍ରତିଷ୍ଠାରେ ଓଡ଼ିଆ ଜାତିର ସମ୍ମାନ ବଢ଼ିବ— ଜାତିର ନା ପଡ଼ିବ ଏହା ଥିଲା କବିଙ୍କ ଯୋଜନା । ଆଜି ଭାରତ ସର୍କାର ଦିଲ୍ଲୀରେ ଜଗନ୍ନାଥ ଦେଉଳ ରାଷ୍ଟ୍ରପତି ଭବନରେ ତିଆରି କରିବାକୁ ଯାଉଛନ୍ତି । ମାତ୍ର ୧୯୫୨ ସାଲ ପରେ ତାହା ଦିଲ୍ଲୀରେ ସ୍ଥାପନା ହୋଇଥିଲା । ଏହାର ଖବର କେହି ଓଡ଼ିଆ ପ୍ରତିନିଧି ନିଅନ୍ତି ନାହିଁ । କବିଙ୍କ ମୃତ୍ୟୁ ପରେ ତାଙ୍କ ସ୍ୱାମୀ କଟକରେ ସନ୍ତାନ ମାନଙ୍କୁ ଧରି ରହିଥିଲେ ଓ ଦ୍ୱିତୀୟ ବିବାହ କରିଥିଲେ । କୃଷ୍ଣ ପ୍ରସାଦଙ୍କ ମୃତ୍ୟୁ ପରେ କୁନ୍ତଳା କୁମାରୀଙ୍କ ସମ୍ପତ୍ତି ଓ ଅର୍ଥର ବିଭ୍ରାଟ ଘଟିଥିଲା । ସନ୍ତାନ ଦୁଇଟିଙ୍କର ଅକଳନ ଦୁର୍ଦ୍ଦଶା ଓ ଶୋଚନୀୟ ଅବସ୍ଥା ଘଟିଥିଲା । ସେ ନିର୍ମମ ନିର୍ଦ୍ଦୟ କାହାଣୀ ସାଧାରଣ ଜାଣନ୍ତି । ସେଥିପାଇଁ ରିସିଭର ନିଯୁକ୍ତ କରି ପିଲାଙ୍କୁ ଅଲଗା ରଖି ସମ୍ପତ୍ତି ବୁଝିବା ପାଇଁ ରିସିଭର ରହିବା ପାଇଁ ମୁଁ ଅଦାଲତରେ ମକଦ୍ଦମା କରିଥିଲି । ସାକ୍ଷୀ ଅଭାବରୁ ମକଦ୍ଦମା ଖାରଜ ହୋଇଥିଲା ।

କବି ଭାରତୀୟ ରାଜନୈତିକ ଅନୁଷ୍ଠାନ କଂଗ୍ରେସ ଓ ଦିଲ୍ଲୀର ସାମାଜିକ ଓ ଧର୍ମ ସଂସ୍ଥା ମାନଙ୍କ ସହିତ ସଂପୃକ୍ତା ଥିଲେ । ସହିତ୍ୟ, ସଂସ୍ଥା "ଉତ୍କଳ ତପୋବନ ସଂଘ" ନାମରେ ଓଡ଼ିଶାରେ କରିବା ପାଇଁ ତାଙ୍କର ପରିକଳ୍ପନା ଫଳବତୀ ହୋଇ ନ ଥିଲା । ସେ ଗୋଟିଏ ପ୍ରେସ୍ କରି ତହିଁରେ ଓଡ଼ିଆ ସାହିତ୍ୟ ପ୍ରକାଶ କରିବାକୁ ମଧ୍ୟ କଳ୍ପନା କରିଥିଲେ । ତାଙ୍କର ଅର୍ଥାଗମ ଏତେ ବେଶି ହେଉଥିଲା ଯେ ସେ କୌଣସି ବଡ଼ ଯୋଜନାକୁ ନିଜେ ରୂପାୟନ କରିବା ପାଇଁ ସମର୍ଥ ଥିଲେ । ଓଡ଼ିଆମାନଙ୍କ ପ୍ରାଣରେ ସାହାସ ଓ ଶକ୍ତି ଆସିବ ବୋଲି ସେ ଓଡ଼ିଆମାନଙ୍କୁ ନିଜ ନାମ ପୂର୍ବରେ ଶ୍ରୀ ବା ଶ୍ରୀଯୁକ୍ତ ନ ଲେଖି "ବୀରଶ୍ରୀ" ଗଜପତି ଗୌଡ଼େଶ୍ୱର ପ୍ରଭୃତି ଓଡ଼ିଆ ଲୋକଙ୍କ ଜାତିକରେ ଲେଖା ହୁଏ ବୋଲି ସମସ୍ତଙ୍କୁ ସେହି ରୀତି ଅନୁଯାୟୀ "ବୀରଶ୍ରୀ" ବୋଲି ଲେଖିବା ପାଇଁ ପ୍ରବର୍ତ୍ତନା ଦେଇ ଅନୁରୋଧ କରିଥିଲେ—ତାଙ୍କ ଲିଖିତ "ଦିଲ୍ଲୀ ଚିଠି"ରେ !

କଟକରେ ଥିବା ବେଳେ ଡାକ୍ତରୀ ପାସ୍ କରି ସେ ଘରେଇ "ପ୍ରାକ୍ଟିସ୍" କରି ସହରରେ ପରିଚିତ ଥିଲେ । କାରଣ ତାଙ୍କ କାଳରେ ସେହି ଏକା ନୂଆ ପ୍ରତିଷ୍ଠିତ ହୋଇଥିବା "ରେଡକ୍ରସ୍ ସଂସ୍ଥା"ର ଡାକ୍ତରଣୀ କାର୍ଯ୍ୟ କରି ବେତନ ପାଉଥିଲେ । ଏବଂ ଧାତ୍ରୀ ଶିକ୍ଷା ଦେଉଥିଲେ । ତାଙ୍କ ପାଖରେ ଧାତ୍ରୀମାନେ ପରୀକ୍ଷା ଦେଉଥିଲେ । କଟକରେ ବିଭିନ୍ନ ମାତୃମଙ୍ଗଳ କେନ୍ଦ୍ରକୁ ସେ ଧାତ୍ରୀମାନଙ୍କୁ ସେବା କରିବାକୁ ପଠାଉଥିଲେ ।

ସେ ଆର୍ଯ୍ୟ ସମାଜ ଭୁକ୍ତା ହେଲା ପରେ ପୁରାପୁରି ହିନ୍ଦୁଙ୍କ ସଂସ୍କାର, ଓଷା, ବ୍ରତ ଓ ହିନ୍ଦୁନାରୀଙ୍କ ଆଦର୍ଶକୁ ଶ୍ରଦ୍ଧା ଚକ୍ଷୁରେ ଦେଖିବାକୁ ଲାଗିଲେ ।

ଦୂରରେ ରହି ଓଡ଼ିଆ ଜାତି ସବୁ ଦିଗରେ ଭାରତରେ ବଡ଼ ଜାତିଭାବରେ ଗଣିତ ହେବାର ସ୍ୱପ୍ନଜାଲ ବୁଣୁଥିଲେ କୁନ୍ତଳା । ସେଥିପାଇଁ ଓଡ଼ିଶାର ଉତ୍କଳସମ୍ମିଳନୀରେ ୧୯୨୦ ମସିହାରେ ମାନ୍ଦାଦଳଆ ନେତାମାନଙ୍କ ଆନ୍ଦୋଳନ ଓ ଦାବୀ ଗୃହୀତ ହୋଇଥିଲା । ତାହାର ଗଭୀର ପ୍ରଭାବ କବିଙ୍କ ଉପରେ ପଡ଼ିଥିଲା । ସେ ଉତ୍କଳ ସମ୍ମିଳନୀର ପ୍ରାରମ୍ଭିକ ସଂଗୀତ ରଚନା କରିଥିଲେ । ଅନେ୍ଚ୍ଛା ସମ୍ବିତ କୁମାରୀ ମାନଙ୍କ ସମବେତ କଣ୍ଠ ସ୍ୱରରେ "କୋଟି କଣ୍ଠ ମୁକ୍ତା ମାଳନୀ" ଗୀତର ସ୍ୱର ଭାବ ଉପସ୍ଥିତ ଶତ ସହସ୍ର ଓଡ଼ିଆ ନର ନାରୀଙ୍କ କର୍ଣ୍ଣାମୃତ ହୋଇଥିଲା ଏବଂ ଉତ୍କଳ ମାତାଙ୍କ ବନ୍ଦନା ହୃଦୟରେ ଜାତିପ୍ରୀତିର ଉନ୍ମାଦନା ସୃଷ୍ଟି କରିଥିଲା । ସେ ସେହି ସମୟରେ କଠୋରରେ ଡାକ୍ତରୀ କରୁଥିଲେ । ସେହି ସମୟରେ ଭାରତୀୟ ଅହିଂସା ଅସହଯୋଗ ଆନ୍ଦୋଳନ ସହିତ ସେ ସଂଯୁକ୍ତା ନ ଥିଲେ । ସେ ଉତ୍କଳର ଦେଶ ମିଶ୍ରଣ ଦିଗରେ ଧ୍ୟାନ ଦେଇଥିଲେ ।

କୁନ୍ତଳା କୁମାରୀଙ୍କ ରଚନା ଆପାମର ଜନତା ଶିକ୍ଷିତ ଅଶିକ୍ଷିତ ସମସ୍ତଙ୍କ ପାଖରେ ଆଦୃତ ହେଉଥିଲା । ଉତ୍କଳର ଅତୀତ ଗୌରବ ଓ କାରିଗର ଶିଳ୍ପ ପ୍ରତିଭା ସାହିତ୍ୟ ବଢାଇବାକୁ ହେଲେ ଦେଶରେ ବହୁଧନର ଆବଶ୍ୟକତା ସେ ଉପଲବ୍ଧି କରୁଥିଲେ ବୋଲି ଦେଶର ଲୁପ୍ତଗୌରବ ଉଦ୍ଧାର ପାଇଁ ଦେଶମିଶ୍ରଣ ହୋଇ ଏକ ଶାସନରେ ଓଡ଼ିଶା ରହିବା ଉଚିତ ବୋଲି ସେ କହୁଥିଲେ । କିନ୍ତୁ ଇଂରେଜ ଏ ଦେଶରୁ ନ ଗଲେ ଭାରତ ସ୍ୱାଧୀନ ନ ହେଲେ ଏହା ସମ୍ଭବ ହେବ ନାହିଁ ବୋଲି ଗାନ୍ଧୀଜିଙ୍କ ସ୍ୱରାଜ୍ୟ ଲକ୍ଷରେ ଆଗଭର ହୋଇ ସମସ୍ତଙ୍କର ପହଞ୍ଚିବା ପାଇଁ ସଂଗ୍ରାମରେ ଝାସ ଦେବା ପାଇଁ ସେ ସମସ୍ତଙ୍କୁ କବିତା ଦ୍ୱାରା "ଆହ୍ୱାନ" କରିଥିଲେ ।

ତାଙ୍କ କବିତା ନିର୍ଝରିଣୀ ପରି ନିର୍ବିଥିଲା ଅଭିଶପ୍ତ ଜାତି ପ୍ରାଣରେ ଆକୁଳ ଆବେଗର ଆଲୋଡନ ସୃଷ୍ଟି କରି । ସେ ଓଡ଼ିଆଙ୍କ ବ୍ୟକ୍ତିତ୍ୱର ବ୍ୟଷ୍ଟିତ୍ୱର ଯଥାର୍ଥ ବିକାଶ ଚାହୁଁଥିଲେ । ଜାତିର ଏକତା ଓ ଗବେଷଣାର ଆବଶ୍ୟକତା ସେ ଉପଲବ୍ଧି କରିଥିଲେ । ସେ ଯଥାର୍ଥରେ ଉତ୍କଳର ବରପୁତ୍ରୀ ଥିଲେ ।

ଭାରତ ସ୍ୱାଧୀନ ହେଲା । କିନ୍ତୁ କବି କଳ୍ପନା ସାର୍ଥକ ହେଲା ନାହିଁ । ଓଡ଼ିଆଙ୍କର ଦୁର୍ଦ୍ଦଶା ମୋଚନ ହେଲା ନାହିଁ । ଓଡ଼ିଶାର ବିଚ୍ଛିନ୍ନାଙ୍ଗ ପୂର୍ଣ୍ଣାଙ୍ଗ ହେଲା ନାହିଁ । ଜାତିର ଏକତା ସମ୍ଭବ ହେଲା ନାହିଁ । —"ବିଶାଳ ଉତ୍କଳ" ରୂପବନ୍ତ ହେଲା ନାହିଁ । ବିପ୍ଳବିଣୀ ଭାରତୀପୁ କବି କୁନ୍ତଳା କୁମାରୀଙ୍କ ଛନ୍ଦୋମୟୀ କବିତା ବଂଶୀ ଶୋକ ସ୍ୱରରେ ଝଙ୍କୃତ ହୁଉଛି । ତାଙ୍କ ସାରସ୍ୱତ ବୀଣାରେ ମାନବ ସଂସ୍କୃତିର ସପ୍ତସ୍ୱର ବାଜୁଛି । ସେହି ସପ୍ତସ୍ୱର ଦେଶ କାଳ ପାତ୍ର ସୀମାର ସଙ୍କୀର୍ଣ୍ଣ ପରିଧିରେ ସୀମିତ ନୁହଁ । ପୁରାତନ ସାହିତ୍ୟ ସରଣୀ ପଥ ଅତିକ୍ରମ କରି ନବୀନ ଛନ୍ଦରେ ନବ ସାହିତ୍ୟର ପୂଜା କରି କବି ଦେଇଥିଲେ ତାଙ୍କ କବିତାରେ ଆଧୁନିକ ଯୁଗ ସଙ୍କେତ । ସେହି ସଙ୍କେତରେ ଉତ୍କଳ ଜନନୀର ଆତ୍ମା କଥା କହୁଛି ।

ଦୌର୍ବଲ୍ୟ, ଆତ୍ମକଳହ, ବିଭେଦ, ଈର୍ଷା, ହିଂସା, ମିଥ୍ୟା, ପ୍ରବଞ୍ଚନା, ପରଶ୍ରୀକାତରତାରେ ଉତ୍କଳର ଗ୍ରାମ ସହର ଆଜି ବିକ୍ଷୁବ୍ଧ । ରାଜନୀତିକ ଚେତନାର ବହୁ ଦୂରରେ ପଡ଼ିଛି ଆମର ଗଣତାନ୍ତ୍ରିକ ସ୍ୱାଧୀନତା । ସେଥିପାଇଁ ଦେଶର କବି ଓ କବିତାର ଆଦର ଓ ଗୌରବ ପରିଲକ୍ଷିତ ହୁଏ ନାହିଁ । କବିଙ୍କର ଆଦର୍ଶ ଓଡ଼ିଆ ଜାତି ଗ୍ରହଣ କରି ନାହିଁ ।

ଉତ୍କଳ ଭାରତୀଙ୍କ ସାହିତ୍ୟରେ ସତ୍ୟ ଶିବ ସୁନ୍ଦରଙ୍କ ଅପୂର୍ବ ସମନ୍ୱୟ ହୋଇଥିଲା । ସେ ଅମର୍ତ୍ତ୍ୟ କବି ଥିଲେ କିନ୍ତୁ ଭବିଷ୍ୟତ ଓଡ଼ିଆ ନାରୀ ସାହିତ୍ୟିକା ତାଙ୍କୁ କଳିବେ ବୋଲି ମନେ କରେ ନାହିଁ ।

ଉତ୍କଳର ଏହି ମହୀୟସୀ ଭକ୍ତିମତୀ କବିଙ୍କର ଗୋଟିଏ କବିତାରୁ ତାଙ୍କର ହୃଦୟର ଅତଳସ୍ପର୍ଶୀ ମାନବ ପ୍ରୀତି ଜଣା ପଡ଼େ । ସେ ମନୁଷ୍ୟ ଭିତରେ ଭଗବାନଙ୍କୁ ଧରି ପାରିଥିଲେ । ଭଗବାନ ନର ବେଶରେ ସମସ୍ତଙ୍କ ଦ୍ୱାରରେ ଭିଖାରି । ତାଙ୍କୁ କବିଙ୍କ ଦୃଷ୍ଟି ଚିହ୍ନିଲା । ସେଥିପାଇଁ "ନରନାରାୟଣ" ଏକ ବୋଲି ଭାବି କବି ଲେଖିଛନ୍ତି ।

ତୁମେ ଏଇପଥେ ଯିବ ବୋଲି
ସାରା ରାତି ଧରିଥିଲୁ ଉଜାଗର
ରଖିଲୁ କବାଟ ଖୋଲି ।

ବଢ଼ିଦ ସୁନ୍ଦର ମୋହନ ଲୀଳା
ଆକାଶେ ଆସୀମ ଆଲୋକ ମେଳା,
ସୂର୍ଯ୍ୟ ଚନ୍ଦ୍ରାତପ ଥାପି, ଅନନ୍ତ ଦିଗନ୍ତ ବ୍ୟାପୀ
କୋଟି ତାରା ଦୀପେ ମଙ୍ଗଳ ଆଳତି ଜାଳି
ହୃଦ ଉଲ୍ଲସାଇ ବାସ ବିକଶାଇ
ଫୁଟାଇ କୁସୁମ ମାଳି ।

ନିଖିଳ ଜାଗିଲା ତୁମରି ପାଇଁ
ମହାମହିମଙ୍କୁ ଥିଲା ଅନାଇ

ବହିଲା ସୁବାସ ମଳୟ ମନ୍ଦେ,
ଗାଇଲେ ବିହଙ୍ଗ ଲଳିତ ଛନ୍ଦେ
ତବ ସ୍ତବ ସ୍ତୁତି ବନ୍ଦନା,
ନବ ଧାନ ଦୁବ, ଚନ୍ଦନ ଘେନି
ସଜାଡ଼ିଲି ଅର୍ଘ୍ୟ ଥାଳି ।

ତୁମେ ଗଲ କେଉଁ ପଥେ
କେହି ନ ଜାଣିଲି ସତେ
ଦରିଦ୍ର ଇତର ବେଶେ ଦ୍ୱାରେ ଦ୍ୱାରେ
ପଡ଼ିଲି ଶ୍ରୀପାଦ ଧୂଳି,
ଶତଚ୍ଛିନ୍ନ ତବ ଭିକ୍ଷାର ଥଳି
ଫୁଟିଇଲ ବୁଲି ବୁଲି ।
କେହି ନ ଚିହ୍ନିଲେ ନର ନାରୀପୁଣ
ଛନ୍ଦେ ପ୍ରେମ ଦେଲ ଢାଳି ।

---

ଜୟ ମା କୁନ୍ତଳା ଉତ୍କଳ ଭାରତୀ
ବନ୍ଦେ ମାତରମ୍